# ପରାର୍ଥ ପଥିକ

## ଦ୍ୱିତୀୟ ଖଣ୍ଡ

ସଂକଳକ

**ରବୀନ୍ଦ୍ରନାଥ ପାଢ଼ୀ**



# ପରାର୍ଥ ପଥିକ

## ଦ୍ୱିତୀୟ ଖଣ୍ଡ

ପ୍ରକାଶକ :
ଭାଗ୍ୟଧର ସାହୁ
ପଥିକ ପ୍ରକାଶନୀ
ଭିଭିପି କଲୋନୀ, ରସୁଲଗଡ଼,
ଭୁବନେଶ୍ୱର-୭୫୧୦୧୦, ଓଡ଼ିଶା

ଅକ୍ଷର ସଜ୍ଜା :
ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ :
ଶୋଭନ ପ୍ରେସ୍, ଭୁବନେଶ୍ୱର

ପ୍ରଥମ ପ୍ରକାଶ : କାର୍ତ୍ତିକ ୨୦୦୨

ସହଯୋଗ ରାଶି : ତିରିଶି ଟଙ୍କା

ISBN - 81- 88034 - 05 - 3

# ସୂଚୀପତ୍ର

# ଆଦ୍ୟ କଥନ

ବେଶ୍ କିଛି ବର୍ଷ ତଳର କଥା ।

ଏବେକାର ଜଗତସିଂହପୁର (ସେ କାଳରେ ଅବିଭକ୍ତ କଟକ) ଜିଲ୍ଲାର ବିଲୁଆଖାଇ ନଈ କୂଳରେ ବାଗଲପୁର ବୋଲି ଗୋଟିଏ ଗାଁ ।

୧୯୨୩ ମସିହା ଅକ୍ଟୋବର ୩ ତାରିଖ ।

ପବିତ୍ର କାର୍ତ୍ତିକ ମାସ କୃଷ୍ଣପକ୍ଷ ହସ୍ତା ନକ୍ଷତ୍ରର ଏକ ରାତିରେ ବାପା ଖୁସାଲି ଚରଣ ଦାସ ଓ ମାଆ ହାରାମଣିଙ୍କର କୋଳ ମଣ୍ଡନ କରି ସେଇ ଗାଁରେ ଭୂମିଷ୍ଠ ହେଲା ଶିଶୁଟିଏ ।

ଗାଁକୁ ସେ ଦିନ ଆସିଥାଏ ଗୋଟିଏ ନାଟ ଦଳ । ସାରା ରାତି ଉଲୁସି ଉଠୁଥାଏ, ଉଚ୍ଛୁଳି ପଡୁଥାଏ ନାଚଗୀତ ଓ ହସଖୁସିରେ । ସମସ୍ତଙ୍କ ଚିତ୍ତ-ରଞ୍ଜନକାରୀ ସେଇ ଆନନ୍ଦମୁଖର ଆମୋଦମଧୁର ବେଳାରେ ଜନ୍ମ ନେଇଥିବା ନବଜାତକର ନାଁ ତେଣୁ ରଖାଗଲା ଚିତ୍ତରଞ୍ଜନ ।

ଶିଶୁଟି କ୍ରମଶଃ ବଡ଼ ହେବାକୁ ଲାଗିଲା । ଏକ ନୂଆ ଆଖି ନେଇ ସେ ତା' ଚାରିପାଖର ସଂସାରକୁ ଦେଖିଲା, ମଣିଷମାନଙ୍କୁ ଦେଖିଲା । ସବୁକିଛି ତାକୁ ଭାରି ଭଲ ଲାଗୁଥିଲା, ସମସ୍ତେ ତାକୁ ଖୁବ୍ ଆପଣାର ଲାଗୁଥିଲେ । ଆତ୍ମୀୟତାର ଏହି ମହନୀୟ ଅନୁଭବଟି ତା' ପାଇଁ ଖୁବ୍ ସହଜ ଓ ସହଜାତ ହୋଇ ରହିଥିଲା । ସମ୍ଭବତଃ ସେଇଥିପାଇଁ ଜୀବନରେ ଯୁଆଡେ ସେ ଯାଇଛି, ସିଆଡେ ଏକ ପାରିବାରିକ ସମ୍ପର୍କରେ ଗଅଁଠାଇ ହୋଇଯାଇଛି । ସେଇ ଯେ ପିଲାଟିଦିନରୁ ତା' ଭିତରେ ଗଜୁରି ଉଠିଥିଲା ଭଲପାଇବାର କଅଁଳ ଲତିକାଟିଏ, ସିଏ ଏବେ ଲଟେଇ ଲଟେଇ କାହିଁ କେତେ ଆଡ଼କୁ ମାଡ଼ି ଗଲାଣି, କେତେ କେତେ ହୃଦୟସହିତ ନିବିଡ଼ ଭାବରେ ଛନ୍ଦି ହୋଇଗଲାଣି ।

ସେଦିନର ଶିଶୁ ଆଜି ଅଶୀତି ବର୍ଷ ବୟସରେ ପଦାର୍ପଣ କରିବାକୁ ଯାଉଛି । ଅସୁମାରି ଜୀବନ ସହିତ ଓତଃପ୍ରୋତ ବିଜଡିତ ସେ, ସମସ୍ତଙ୍କର ଅତି ପରିଚିତ ଓ ଏକାନ୍ତ ଅନ୍ତରଂଗ ସେ । ଆବାଳବୃଦ୍ଧବନିତା ସମସ୍ତେ ତାକୁ ଆଦରରେ ଡାକନ୍ତି 'ଚିତ୍ତଭାଇ' । ସୁଖର କଥା ଆଜି ତାଙ୍କର ଅଶୀତିତମ ଶୁଭ ଜନ୍ମତିଥିରେ 'ପରାର୍ଥ ପଥିକ'ର ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହେବାର ସୌଭାଗ୍ୟ ଅର୍ଜନ କରିପାରିଛି । ଏହି

ଅବସରରେ ସଂକଳନଟି ମାଧ୍ୟମରେ ଚିତ୍ତଭାଇଙ୍କର ସକଳ ଅନୁରାଗୀ ପାଠକପାଠିକା ତଥା ସାଥୀ ସହଯାତ୍ରୀଙ୍କ ତରଫରୁ ଆମେ ଦିବ୍ୟ ଜନନୀଙ୍କର ଚରଣ କମଳରେ ତାଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ ପ୍ରାର୍ଥନା ଜଣାଉଛୁ । ସେ ଶତାୟୁ ହୁଅନ୍ତୁ ! ଶତେକ ଶରତର ଶେଫାଳୀ ଝରିଯାଉ ତାଙ୍କ ସମର୍ପିତ ଜୀବନର ଶୁଭ୍ର ଅଙ୍ଗନରେ ।

ବାଗଲପୁର ଅବଶ୍ୟ ତା'ଙ୍କ ଜୀବନଯାତ୍ରାର ଭୌଗୋଳିକ ଆରମ୍ଭ ବିନ୍ଦୁ । ତା'ପରେ କିନ୍ତୁ ବହୁ ଦୂରକୁ ପ୍ରସରି ଯାଇଛି ତାଙ୍କର ପରିଧି । ବିଶ୍ୱତୋମୁଖ ହୋଇ ବିସ୍ତରି ଯାଇଛି ତାଙ୍କର ପଥ । ଗାଁର ସ୍ନେହମୟ ଶ୍ୟାମଳ ଅଂଚଳ ତଳେ ବିତିଥିଲା ଶୈଶବ । କୈଶୋର କଟିଲା କଟକରେ, ସହରର ଆବହାଉଆ ଭିତରେ । ଗାଁରୁ ପ୍ରାଥମିକ ଶିକ୍ଷା ଶେଷ କରି ସେ ଆସିଥିଲେ କଟକର ରାଣୀହାଟ ମାଇନର ସ୍କୁଲ, ରେଭେନ୍ସା କଲିଜିଏଟ୍ ସ୍କୁଲ ଓ ତା'ପରେ ରେଭେନ୍ସା କଲେଜ୍‌ରେ ଉଚ୍ଚରୁ ଉଚ୍ଚତର ଶିକ୍ଷାଲାଭ କରିବାପାଇଁ । ଛାତ୍ରାବସ୍ଥାରୁ ଅର୍ଥାତ୍ କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ହିଁ ଜାତୀୟ ମୁକ୍ତି ଆନ୍ଦୋଳନରେ ସେ ନିଜକୁ ସାମିଲ୍ କରିଥିଲେ । ୧୯୪୨ ମସିହାରେ ଯେତେବେଳେ ସମଗ୍ର ଦେଶରେ ବହୁଥାଏ ଭାରତଛାଡ ଆନ୍ଦୋଳନର ଉଦ୍ଦୀପନାମୟ ଉଦ୍ଦାମ ଝଡ଼, ସେତେବେଳେ ତହିଁରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରି ସେ ପ୍ରାୟ ଦୀର୍ଘ ତିନିବର୍ଷ ଅବଧି କାରାବରଣ କରିଥିଲେ ।

ବାଙ୍ଗାଲୋର କେନ୍ଦ୍ରୀୟ ଜେଲ୍‌ରୁ ମୁକୁଳି କିଛିକାଳ ପାଇଁ ଗାଁ ଅଞ୍ଚଳ ହାଇସ୍କୁଲ୍‌ରେ ଶିକ୍ଷକତା କରୁଥିବା ସମୟରେ ସେ ସୁବିଖ୍ୟାତ ଶିକ୍ଷାତୀର୍ଥ ଶାନ୍ତିନିକେତନରେ ପଢ଼ିବାର ସୁଯୋଗ ପାଇଥିଲେ । ୧୯୪୫ରୁ ୧୯୫୦ ପର୍ଯ୍ୟନ୍ତ ସ୍ନେହମୟୀ ଜନନୀଟି ପରି ଶାନ୍ତିନିକେତନ ତାଙ୍କ ଅସଲ ଜିଜ୍ଞାସାଗୁଡ଼ିକୁ ଲାଳନ କରିଥିଲା ଏବଂ ଏକ ନୂତନ ଜୀବନ ଦୀକ୍ଷାରେ ତାଙ୍କୁ ଦୀକ୍ଷିତ କରାଇଥିଲା । ସେଇଠୁ ସେ ଆପଣା ଭିତରେ ଥିବା ସକଳ ସଖ୍ୟକାମନା, ଅନୁରାଗ ଓ ଅନୁସନ୍ଧିତ୍ସା ନେଇ ଖୋଜି ବାହାରିଥିଲେ ବିପୁଳାୟତନ ବିଶ୍ୱକୁ । ଶାନ୍ତିନିକେତନର ନିର୍ଭୟ ନୀଡ଼ ତାଙ୍କ ଡେଣାରେ ଭରି ଦେଇଥିଲା ଯେଉଁ ପ୍ରତ୍ୟୟ ଓ ବଳ ତାହାହିଁ ତାଙ୍କୁ ଉଡାଇ ନେଇଥିଲା ବିଶ୍ୱନୀଡ଼ର ସନ୍ଧାନରେ ।

ପରବର୍ତ୍ତୀ ଚାରି ବର୍ଷ ଡେନ୍‌ମାର୍କର ରାଜଧାନୀ କୋପେନ୍‌ହେଗନ୍‌ସ୍ଥିତ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନ, ସମାଜ ବିଜ୍ଞାନ ଏବଂ ସାଂସ୍କୃତିକ ନୃତତ୍ତ୍ୱ ଅଧ୍ୟୟନରେ ସେ ବ୍ରତୀ ହୋଇଥିଲେ । ତାଙ୍କର ସେହି ଅଧ୍ୟୟନ ହିଁ ମଣିଷକୁ ବୁଝିବାର ଓ ତା' ସମ୍ପର୍କରେ ଅନ୍ତରଙ୍ଗ ଭାବରେ ଜାଣିବାର ଏକ ଅନନ୍ୟ ଅବକାଶ ତାଙ୍କୁ ଯୋଗାଇ ଦେଇଥିଲା, ଦୂରକୁ ନିକଟ ତଥା ପରକୁ ଆପଣାର କରିବାର ଏକ ଆବେଗ ଆସି ଏକାବେଳକେ ତାଙ୍କ ହୃଦୟର ସକଳ ଗବାକ୍ଷକୁ ଖୋଲି ଦେଇଯାଇଥିଲା ।

୧୯୫୪ରେ ଡେନ୍‌ମାର୍କରୁ ଫେରି ସେ ଆରମ୍ଭ କଲେ 'ଜୀବନ

ବିଦ୍ୟାଳୟ'– ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଗଠନ ପାଇଁ ଶିକ୍ଷାର ଏକ ଅଭିନବ ପ୍ରୟୋଗ ଶାଳା । ଅନୁଗୁଳ ନିକଟବର୍ତ୍ତୀ ଚମ୍ପଡିମୁଣ୍ଡାଠାରେ ପ୍ରତିଷ୍ଠିତ ଏହି ଅନୁଷ୍ଠାନଟି ସତ୍ୟବାଦୀର ବନବିଦ୍ୟାଳୟ ପରି ଇତିହାସ ପ୍ରସିଦ୍ଧି ଲାଭ କରିଥିଲା । ପ୍ରକୃତରେ 'ଜୀବନ ବିଦ୍ୟାଳୟ' ଥିଲା ତାଙ୍କ ଯାତ୍ରା ପଥରେ ଏକ ଶକ୍ତ ତଥା ସମୁଜ୍ଜ୍ୱଳ ମାଇଲ୍ ଖୁଣ୍ଟ । ବାଟଚଲା କିନ୍ତୁ ସେଇଠି ଅଟକି ଗଲାନି । ୧୯୫୮ ମସିହାରେ ଆଗ୍ରା ନିକଟସ୍ଥ ବିଚ୍ପୁରୀଠାରେ ଥିବା ଗ୍ରାମୀଣ ଉଚ୍ଚଶିକ୍ଷା ଅନୁଷ୍ଠାନରେ ସମାଜ ବିଜ୍ଞାନ ଅଧ୍ୟାପକ ଭାବେ ସେ ଯୋଗ ଦେଲେ । ଏହିଠାରୁ ଯାଇ ସେ ୧୯୬୨ ମସିହାରେ ପଶ୍ଚିମ ଜର୍ମାନୀ ଅନ୍ତର୍ଗତ ସୋନେନ୍‌ବର୍ଗ ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ରରେ ମଧ୍ୟ ଅଧ୍ୟାପକ ଭାବରେ କିଛିକାଳ ଅତିବାହିତ କରିଥିଲେ । ତା'ପରେ 'ୟୁନେସ୍‌କୋ'ର ବିଭିନ୍ନ କାର୍ଯ୍ୟକ୍ରମରେ ନିମନ୍ତ୍ରିତ ହୋଇ ସେ ପୁଣି ଥରେ ବିଦେଶ ଯାଇଛନ୍ତି । ଡେନ୍‌ମାର୍କ, ଫିନ୍‌ଲ୍ୟାଣ୍ଡ, ଜର୍ମାନୀ, ସ୍ୱିଜରଲ୍ୟାଣ୍ଡ ଓ ଇସ୍ରାଏଲ୍ ଭ୍ରମଣ କରି ଜୀବନ ସମ୍ପର୍କରେ ବ୍ୟାପକ ଓ ବିପୁଳ ଅଭିଜ୍ଞତା ଅର୍ଜନ କରିଛନ୍ତି । ଏବଂ ଶେଷରେ ସେ ବାହୁଡ଼ି ଆସିଛନ୍ତି ସ୍ୱଦେଶକୁ ।

୧୯୭୦ ମସିହା ବେଳକୁ ଆଉ ଏକ ବିପୁଳତାର ପରିଚୟ ସତେ ଅବା ତାଙ୍କୁ ଅପେକ୍ଷା କରିଥିଲା ଓ ସେପାଇଁ ସେ ଜୀବନ ବିଧାତାଙ୍କ ଦ୍ୱାରା ବଛା ହୋଇ ରହିଥିଲେ । ଶ୍ରୀ ଅରବିନ୍ଦଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କର କେତୋଟି ରଚନାକୁ ଓଡ଼ିଆରେ ଅନୁବାଦ କରିବା ଲାଗି ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମ ତରଫରୁ ଗୋଟିଏ ଯୋଜନା ପ୍ରସ୍ତୁତ ହୋଇଥିଲା । ତଦନୁଯାୟୀ The Life Divine, The Synthesis of Yoga, The Human Cycle ଏବଂ The Ideal of Human Unity ପୁସ୍ତକ ଚାରୋଟିର ଅନୁବାଦ ଭାର ତାଙ୍କରି ଉପରେ ପଡ଼ିଲା । (ଏଠାରେ ସୂଚନାଯୋଗ୍ୟ ଯେ ଜଣେ ଅତ୍ୟନ୍ତ ଉଚ୍ଚକୋଟୀର ସାହିତ୍ୟିକ ଓ କୃତବିଦ୍ୟ ଅନୁବାଦକ ରୂପେ ତାଙ୍କର ପ୍ରଖ୍ୟାତି ସେତେବେଳେ ସର୍ବତ୍ର ପରିବ୍ୟାପ୍ତ ହୋଇସାରିଥିଲା ।) ତା' ପରେ ସେ ଭୁବନେଶ୍ୱରକୁ ଆସିଲେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ ହୋଇ । ବନ୍ଧୁ ଶ୍ରୀ ପ୍ରପତ୍ତିଙ୍କ ପ୍ରେରଣା ଓ ଅନୁରୋଧରେ ଶ୍ରୀଅରବିନ୍ଦ ପାଠଚକ୍ର ଓ ପୂର୍ଣ୍ଣାଙ୍ଗ ଶିକ୍ଷାର ଆନ୍ଦୋଳନରେ ସେ ନିଜକୁ ପୂର୍ଣ୍ଣତଃ ନିୟୋଜିତ କରି ରଖିଲେ । ସମୟ କ୍ରମେ ୧୭ଖଣ୍ଡ ବିଶିଷ୍ଟ ମାତୃରଚନାବଳୀର ସମଗ୍ର ଅନୁବାଦ କାର୍ଯ୍ୟ ତାଙ୍କରି ଦ୍ୱାରା ସମ୍ପନ୍ନ ହେଲା । ନିଃସନ୍ଦେହରେ ଓଡ଼ିଶାରେ ମା' ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣ ଯୋଗ ଓ ପୂର୍ଣ୍ଣାଙ୍ଗ ଶିକ୍ଷାର ଆଦର୍ଶ ଏବଂ ବିଚାରଧାରାକୁ ସାଧାରଣ ଲୋକଙ୍କ ପାଖରେ ପହଞ୍ଚାଇବା କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ବ୍ୟକ୍ତି ତଥା ଗୋଷ୍ଠୀ ଜୀବନକୁ ଏକ ନୂତନ ଚେତନାର ମନ୍ତ୍ରରେ ଉଦ୍‌ବୁଦ୍ଧ କରାଇବା ଦିଗରେ ତାଙ୍କର ଉଦ୍ୟମ ଅଭିନନ୍ଦନୀୟ । ୧୯୭୨ରୁ ଅଦ୍ୟାବଧି ଏ କର୍ମ ସହିତ ତାଙ୍କର ଘନିଷ୍ଠ ସମ୍ପୃକ୍ତି ରହିଆସିଛି ।

ଗରିମାମୟ ତାଙ୍କ ଜୀବନ-ଗାଥାର ଏଇ ସାମାନ୍ୟ ମାତ୍ର ଝଲକ, ବାହାରକୁ

ଦୃଶ୍ୟମାନ ତାଙ୍କ ଗତିପଥର ଏକ ଶାବ୍ଦିକ ରେଖାଚିତ୍ର । ଉପକ୍ରମଣିକା ରୂପେ ତାଙ୍କ ଅସରନ୍ତି ପଥଚାରଣାର କାହାଣୀକୁ ବର୍ଣ୍ଣନା କରିବା ବା ତାଙ୍କ ସୃଜନଶୀଳ ବହୁମୁଖୀ ବ୍ୟକ୍ତିତ୍ୱର ଅଗାଧତା କଳନା କରିବାର ଆସ୍ପର୍ଦ୍ଧା ନ କରି କେବଳ ତାଙ୍କ ଜୀବନର ମୁଖ୍ୟ ଘଟଣା ପ୍ରବାହର ଏକ ସଂକ୍ଷିପ୍ତ ସୂଚନା ଦେବାକୁ ଚେଷ୍ଟା କରାଗଲା ।

ଏବେ ବି ସେ ଚାଲିଛନ୍ତି । ସୋପାନ ପରେ ସୋପାନ, ସକାଳ ପରେ ସକାଳ... ତାଙ୍କ ଭିତରର ରୋହିତ ପ୍ରତ୍ୟୋହ ପାଦ ବଢ଼ାଉଛି ଆଗକୁ ଆଗକୁ । ଏକା ନୁହେଁ, ସମସ୍ତଙ୍କୁ ସାଙ୍ଗରେ ନେଇ ବାଟ ଚାଲିବାରେ ତାଙ୍କର ଆନନ୍ଦ । ଯେଉଁମାନେ ତାଙ୍କୁ ବାଟ ଚାଲୁ ଚାଲୁ ଭେଟିଛନ୍ତି, କିଛି ପରିମାଣରେ ତାଙ୍କ ସଙ୍ଗସୁଧା ପାନ କରିବାର ସୁଯୋଗ ପାଇଛନ୍ତି ସେଇ ବନ୍ଧୁମାନଙ୍କର ଅନୁଭୂତିର ଆଲେଖ୍ୟକୁ ନେଇ 'ପରାର୍ଥ ପଥିକ' ପର୍ଯ୍ୟାୟକ୍ରମେ ଆମ୍ଭ ପ୍ରକାଶ କରୁଛି । ବନ୍ଧୁମାନେ ଚିତ୍ତଭାଇଙ୍କୁ କିଏ କିପରି ଜାଣିଛନ୍ତି, ତାଙ୍କ ସାନ୍ନିଧ୍ୟ ଲାଭ କରି କିପରି ଉପକୃତ ବା ଅଭିଭୂତ ହୋଇଛନ୍ତି ସଂକଳନଟି ମୁଖ୍ୟତଃ ସେ ସବୁର ଏକ ସଶ୍ରଦ୍ଧ ଓ ସକୃତଜ୍ଞ ସଂସ୍କରଣ ।

ସମ୍ପୃକ୍ତ ଲେଖକବନ୍ଧୁମାନଙ୍କର ଅନୁଭୂତି ଓ ସ୍ମୃତିକଥା ମାନଙ୍କରେ କିଞ୍ଚିତ୍ ଝଟକି ଉଠିଛି ଚିତ୍ତଭାଇଙ୍କ ମହନୀୟ ବ୍ୟକ୍ତିତ୍ୱର ବିଭାବ କେତୋଟି । ବ୍ୟକ୍ତିଗତ ସଂପର୍କ ମାଧ୍ୟମରେ ସେମାନେ ତାଙ୍କର ପରିଚୟ ପାଇଛନ୍ତି ଓ ମୁଗ୍ଧ ହୋଇଛନ୍ତି ତାଙ୍କର ବହୁଦେଶଦର୍ଶୀ ପ୍ରଜ୍ଞା, ପ୍ରଗତିଶୀଳ ମନୋଦୃଷ୍ଟି ଓ ସର୍ବୋପରି ମଣିଷ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଏବଂ ସମ୍ବେଦନଶୀଳତାକୁ ଉପଲବ୍ଧି କରି ।

ଜ୍ଞାନର ଅଗାଧ ସମୁଦ୍ରରେ ସନ୍ତରଣରତ ପ୍ରଜ୍ଞା ପୁରୁଷ ସେ– କେତେକଙ୍କ ମତରେ ସେ ଆଉ ଜଣେ ସକ୍ରେଟିସ, ଏକ ଚଳନ୍ତି ଜ୍ଞାନକୋଷ । କୌଣସି ଭାବପ୍ରବଣ ଅଭିବ୍ୟକ୍ତି ବା ବର୍ଣ୍ଣନା ନୁହେଁ, ଜ୍ଞାନଦୀପ୍ତ ବିଶ୍ଳେଷଣ ଓ ଯୁକ୍ତିନିଷ୍ଠତା ହିଁ ତାଙ୍କ ରଚନାର ବିଶେଷତ୍ୱ । ତାଙ୍କ ଲିଖିତ ପ୍ରବନ୍ଧମାନଙ୍କରେ ସେ ଏପରି ଅକାଟ୍ୟ ଯୁକ୍ତିର ଉପସ୍ଥାପନା କରିଥାନ୍ତି ଯେ ଜଣେ ସଚେତନ ପାଠକ ଅଧିକାଂଶ ସ୍ଥଳରେ ତାଙ୍କ ସହିତ ଏକମତ ହୋଇଥାଏ । ଅଥଚ ତାଙ୍କର ବିଚାରଧାରାକୁ ସେ କାହା ଉପରେ ଲଦି ଦିଅନ୍ତି ନାହିଁ । ବରଂ ସେ ସବୁବେଳେ ଭିନ୍ନ ମତ ଓ ବିକଳ୍ପ ଚିନ୍ତନକୁ ସ୍ୱାଗତ କରନ୍ତି । ପରସ୍ପରାନୁକଥନ ବା dialogueରେ ସେ ବିଶ୍ୱାସୀ । ତାଙ୍କ ଦ୍ୱାରା ସୃଷ୍ଟ ସାହିତ୍ୟର ବିପୁଳ ସମ୍ଭାର ଯେ କୌଣସି ବ୍ୟକ୍ତିକୁ ବିସ୍ମିତ କରେ । ତାଙ୍କର ପ୍ରତିଟି ଲେଖା ଆମକୁ ପ୍ରସାରିତ କରିଦିଏ, ଭବିଷ୍ୟତ ଆଡ଼କୁ ଉଦ୍‌ପ୍ରେରିତ କରିନିଏ, ଆମ ମୋହଯୁକ୍ତ ଆଖିରୁ କାଳିମା ଧୋଇଦିଏ ଓ ଆମର ରୁଦ୍ଧ ଗବାକ୍ଷଗୁଡ଼ିକୁ ବିଶ୍ୱ ଆଡ଼କୁ ଖୋଲିଦେବାରେ ସାହାଯ୍ୟ କରେ । ସରଳ ଓ ସାବଲୀଳ ଶୈଳୀଯୁକ୍ତ ତାଙ୍କ ସାହିତ୍ୟରେ ଯେ ଏକ ଆଧ୍ୟାତ୍ମିକ ଶକ୍ତି ଓ ପ୍ରେରଣା ସନ୍ନିହିତ ହେଉଥାଏ ଏ କଥା ଯେ କେହି ସହୃଦୟ ଓ ଚେତନଶୀଳ ପାଠକ ଅନୁଭବ କରିପାରନ୍ତି । ପରିବର୍ତ୍ତନକାତର

ପରମ୍ପରାବାଦୀ ବିଚାର ଓ ରକ୍ଷଣଶୀଳ ମନୋଭାବକୁ ସେ କଟୁ ସମାଲୋଚନା କରନ୍ତି ବୋଲି କେତେକ ତାଙ୍କୁ ନୈରାଶ୍ୟବାଦୀ ବୋଲି ଭୁଲ୍ ବୁଝନ୍ତି । ମାତ୍ର ପ୍ରକୃତରେ ଏକ ଗଭୀର ଆଶାବାଦ ଓ ଭବିଷ୍ୟ ଦୃଷ୍ଟିରେ ତାଙ୍କର ସମସ୍ତ ରଚନା ଭାସ୍ୱର ।

ମାଟିର ମଣିଷ ସିଏ । ଏତେ ଅସାଧାରଣ ଜ୍ଞାନ ଓ ପ୍ରତିଭାର ଅଧିକାରୀ ହୋଇଥିବାରୁ ସେ ନିଜକୁ ସାଧାରଣ ମଣିଷଟି ଠାରୁ ଦୂରେଇ ରଖିପାରନ୍ତି ନାହିଁ । ଅଳପ ଜ୍ଞାନ ହିଁ ନିଜକୁ ଅନ୍ୟଠୁ ଅସ୍ପୃଶ୍ୟ କରି ରଖେ ଓ ଦେଖାଇହେବାକୁ ମନକରେ । କାଳେ ସାଧାରଣ ସ୍ତରର ଲୋକଙ୍କ ସହିତ ମିଶିଲେ ଆପଣାର ଅସାଧାରଣ ଔଜ୍ଜ୍ୱଲ୍ୟ ଜଣା ହୋଇଯିବ ଏପରି ଏକ ଆଶଙ୍କା ଅଳ୍ପ ବିଦ୍ୟା ସଂପନ୍ନ ବ୍ୟକ୍ତିକୁ ଆଚ୍ଛନ୍ନ କରି ରଖିଥାଏ । ସେ କିନ୍ତୁ ଅବଲୀଳା କ୍ରମେ ଶିଖରରୁ ଓହ୍ଲାଇ ଆସି ସାଧାରଣ ମଣିଷଟିକୁ ଆପଣେଇ ନିଅନ୍ତି, କୋଳାଇ ନିଅନ୍ତି । ତାଙ୍କର ଜ୍ଞାନ ତାଙ୍କୁ ମଣିଷ ଭିତରକୁ ବାଟ କଢାଇ ନେଇଛି । ମଣିଷ ପ୍ରତି ତାଙ୍କର ଭାରି ଲୋଭ, ଅତୁଳ ମମତା । ସମସ୍ତଙ୍କୁ ସେ ବାନ୍ଧି ଦିଅନ୍ତି ଏକ ନିଃସ୍ୱାର୍ଥ ସ୍ନେହ ସମ୍ପର୍କରେ ।

କେତେ କେତେ ଅମଡା ବାଟର ବାଟୋଇ ସେ । ନୂତନ ଅନ୍ୱେଷାରେ ସେ ସବୁବେଳେ ଜଣେ ଅଗ୍ରଦୂତର ଭୂମିକା ନିଭାଇ ଆସିଛନ୍ତି । କାହାପାଇଁ ସେ ସଖା ତ ଆଉ କାହାପାଇଁ ଭାଇ, ଗୁରୁ ବା ମାର୍ଗଦର୍ଶକ । ଯିଏ ବି ତାଙ୍କ ସଂସ୍ପର୍ଶରେ ଆସିଛି ସିଏ ଅନୁଭବ କରିଛି ଯେ ଚିରଭାଇ ତା' ଭିତରେ ଉତ୍ସାହ ଓ ଆତ୍ମ ବିଶ୍ୱାସ ଆଣିଦେଇଛନ୍ତି, ତା' ମନରୁ ଅବସାଦ ଓ ସଂକୀର୍ଣ୍ଣତାର ମେଘକୁ ଅପସାରି ଦେଇଛନ୍ତି ।

'ପରାର୍ଥ ପଥିକ'ଙ୍କର ଯାତ୍ରା ଅବ୍ୟାହତ ରହୁ, ସହଯାତ୍ରୀ ଦଳକୁ ଏକ ନୂତନ ଭବିଷ୍ୟତ ଅଭିମୁଖେ ଆଗେଇ ନେବାପାଇଁ ଯିଏ ତାଙ୍କୁ ନିମିତ୍ତ କରି ସଂସାରକୁ ପଠାଇଛନ୍ତି ସେଇ ପରମ ଶାଶ୍ୱତଙ୍କର ଆଶୀର୍ବାଦ-ମଧୁ ବରଷୁଥାଉ ତାଙ୍କ ଚଲାପଥରେ ।

'ପରାର୍ଥ ପଥିକ'ର ଗଜରାଟି ଗୁନ୍ଥିଦେବାର ଦାୟିତ୍ୱ ମୁଖ୍ୟତଃ ମୋ ଉପରେ ନ୍ୟସ୍ତ ଥିଲେ ବି ମୋତେ ଏ କାମରେ ପ୍ରଫୁଲ୍ଲ ଭାଇ ବହୁତ ସାହାଯ୍ୟ କରିଥିବାରୁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଗଜରାଟି ପାଇଁ ଚାରିଆଡୁ ଫୁଲ ତୋଳି ଆଣିଥିବା ଭାଗ୍ୟଧର ଭାଇଙ୍କୁ ବି ଧନ୍ୟବାଦ । କେବଳ ଓଡ଼ିଶାର ଉପବନରୁ ନୁହେଁ, ସୁଦୂର ଉତ୍ତର ପ୍ରଦେଶ ତଥା ବିଦେଶରୁ ମଧ ଫୁଲ ସଂଗ୍ରହ କରି ଆମକୁ ଚୈତନ୍ୟ ଭାଇ (ଅଧ୍ୟାପକ ଚୈତନ୍ୟ ପ୍ରସାଦ ସେଠୀ) ବିଶେଷ ଅନୁଗୃହୀତ କରିଛନ୍ତି । ସେପାଇଁ ତାଙ୍କ ପାଖରେ ସଂକଳକ ଅତ୍ୟନ୍ତ ଋଣୀ । ଶେଷରେ ଶାରଳା ଗ୍ରାଫିକ୍ସର ଭଉଣୀ ସୁପ୍ରିୟା ଉତ୍ସାହପୂର୍ଣ୍ଣ ଭାବରେ ମୁଦ୍ରଣ କାର୍ଯ୍ୟରେ ସହଯୋଗ କରିଥିବାରୁ ତାଙ୍କୁ ମଧ ଅନେକ ଧନ୍ୟବାଦ ।

— ରବୀନ୍ଦ୍ରନାଥ ପାତ୍ର

# ପ୍ରକାଶକୀୟ

ଏପରି ପୁସ୍ତକ ସଂକଳନ କାହିଁକି ପ୍ରକାଶ କରିବା ପାଇଁ ମନ ବଳାଇଲି ସେଇ ବିଷୟରେ ପଦେ ଅଧେ ଲେଖି ଦେଉଛି ।

ଥରେ ଅଧ୍ୟାପକ ବିଶ୍ୱରଂଜନ ଭାଇ 'ପ୍ରଗତିବାଦୀ'ରେ 'ଲେଖକଙ୍କ ପ୍ରେମରେ ପାଠକରୁ ପ୍ରକାଶକ' ଶୀର୍ଷକ ଲେଖାଟିଏ ଲେଖିଥିଲେ । ଲେଖାଟିରେ ସେ ମୋରି କଥାହିଁ ଉଲ୍ଲେଖ କରିଥିଲେ । ସତ କଥା, ଚିତ୍ତଭାଇଙ୍କର ଲେଖା ପଢ଼ି ମୁଁ ତାଙ୍କ ପ୍ରେମରେ ପଡ଼ିଗଲି ଓ ପରେ ତାଙ୍କର ଲିଖିତ ବହିଗୁଡ଼ିକୁ ପ୍ରକାଶ କରିବାକୁ ମନରେ ସାହସ ବାନ୍ଧିଲି । ଏକା ମୁଁ ନୁହେଁ, ମୋ ଭଳି ଆହୁରି ଅନେକ ଅନେକ ବଂଧୁ ତାଙ୍କ ପ୍ରେମରେ ପଡ଼ିଛନ୍ତି ଏବଂ ତାଙ୍କୁହିଁ ଦର୍ଶନ କରିବା ପାଇଁ ଖୋଜୁଛନ୍ତି । ସେମାନଙ୍କଠାରୁ ମୁଁ ଚିତ୍ତଭାଇଙ୍କ ବିଷୟରେ କେତେ କେତେ କଥା ଶୁଣିବାକୁ ଓ ଜାଣିବାକୁ ପାଇଛି । ଏ ସବୁ ମୋତେ ତାଙ୍କ ନିକଟତର ହେବାରେ ସାହାଯ୍ୟ କରିଛି ।

ଢେଙ୍କାନାଳ ଜିଲ୍ଲା ହିନ୍ଦୋଳର କାନ୍ଦରାଶ୍ରେଣିସ୍ଥିତ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ମୁଁ କାର୍ଯ୍ୟରତ ଥାଏ । କୌଣସି କାରଣ ବଶତଃ ୧୯୮୧ ମସିହାରେ ଚିତ୍ତଭାଇ ସ୍କୁଲ ପରିଦର୍ଶନରେ ଆସିଥାନ୍ତି । ସେଇ ଦିନଠୁ ଚିତ୍ତଭାଇଙ୍କ ସହିତ ମୋର ପ୍ରଥମ ସାକ୍ଷାତ । ସେତେବେଳେ ସେ ଯେ ଏତେ ବଡ଼ ଲେଖକ ତା'ର ସାମାନ୍ୟ ଆଭାସ ବି ମୁଁ ପାଇ ନଥିଲି । ଓଡ଼ିଆରେ ପ୍ରକାଶିତ 'ଶ୍ରୀଅରବିନ୍ଦ ସାହିତ୍ୟ ସଂଗ୍ରହ'ର କିଛି ପୁସ୍ତକରେ ଅନୁବାଦକ ଭାବରେ ମୁଁ ଚିତ୍ତରଂଜନ ଦାସଙ୍କ ନାଁ ପଢ଼ିଥିଲି ଏବଂ ଧରି ନେଇଥିଲି ଅନୁବାଦକ ବୋଧେ ବାରିଷ୍ଟର ଚିତ୍ତରଂଜନ ଦାସ, ଯିଏ ଶ୍ରୀଅରବିନ୍ଦଙ୍କ ପକ୍ଷରୁ ଆଲିପୁର ମୋକଦ୍ଦମା ଲଢ଼ି ତାଙ୍କୁ ଖଲାସ୍ କରିଥିଲେ ।

ଚିତ୍ତଭାଇ ଭୁବନେଶ୍ୱରର ପଟେଲ୍ ହଲରେ ଶ୍ରୀଅରବିନ୍ଦଙ୍କ ଅଧ୍ୟୟନ କ୍ଲାସ୍ କରୁଥାନ୍ତି ଓ ଏବେ ମଧ୍ୟ କରୁଛନ୍ତି । ମୋର ପ୍ରିୟ ବନ୍ଧୁ ଅପର୍ତ୍ତି ଭାଇଙ୍କ ଠାରୁ ଏ ବିଷୟରେ ଶୁଣି ସେ କ୍ଲାସରେ ମୁଁ ଯୋଗ ଦେଲି । କ୍ଲାସର ଅନୁଭୂତି ଭିତରେ ମୋର ସମ୍ପର୍କ ବଢ଼ିଲା । କ୍ଲାସରେ ଜାଣିବାକୁ ପାଇଲି ପ୍ରତିବର୍ଷ ଦୁଇଥର ଶ୍ରମ ଶିବିର ହୁଏ । ଏଣୁ ୧୯୯୨ ମସିହା ଡିସେମ୍ବର ଶ୍ରମ ଶିବିର ଡେରାରେ ଯୋଗଦେଲି କେବଳ ତାଙ୍କରି ସାନ୍ନିଧ୍ୟରେ ଆସିବା ପାଇଁ । ଶ୍ରମ ଶିବିରରେ ସାନ୍ଧ୍ୟ ଅଧିବେଶନରେ ମୁକ୍ତ ଆଲୋଚନା ଚାଲେ । ସେଇ ମୁକ୍ତ ଆଲୋଚନାରେ ମୁଁ ଅଧିକାଂଶ ଅପାଭାଇଙ୍କଠାରୁ ଶୁଣିବାକୁ ପାଉଥିଲି ଯେ ସେମାନେ ଆସିଛନ୍ତି ଚିତ୍ତଭାଇଙ୍କୁ ଦେଖିବା ପାଇଁ । ଚିତ୍ତଭାଇଙ୍କ ପ୍ରତି ଏତେ ଲୋକଙ୍କର ଏପରି ଗଭୀର ଶ୍ରଦ୍ଧା ଦେଖି ମୋର ମନେ ହେଲା, ଆମ୍ଭମାନଙ୍କ ମଧ୍ୟରେ ଆହୁରି ଅଧିକ

ଯୋଗସୂତ୍ର ପ୍ରତିଷ୍ଠା ହୋଇପାରନ୍ତା କି !

ତା'ପରେ ୧୯୯୩ ମସିହାରେ ମୁଁ ଚିତ୍ତଭାଇଙ୍କ ଲିଖିତ ଓ ସୁହୃଦ୍ ଗୋଷ୍ଠୀ ଦ୍ୱାରା ପ୍ରକାଶିତ 'ତୀର୍ଥ ଦର୍ଶନ', 'ଚେତନାର ଉନ୍ମୀଳନ', 'ସୋପାନ ପରେ ସୋପାନ' ଏହି ପୁସ୍ତକ ତିନୋଟିକୁ ପ୍ରଥମ ଥର ପାଇଁ ପଢ଼ିବାକୁ ସୁଯୋଗ ପାଇଲି । ସେ ଲେଖା ପଢ଼ି ତାଙ୍କର ଆଉ କ'ଣ କ'ଣ ପୁସ୍ତକମାନ ଅଛି ଖୋଜିବାକୁ ଲାଗିଲି । ଏବେ ମଧ୍ୟ ଲାଗିଛି । ଏହିସବୁ ବହୁତ ବହୁତ ଅନୁଭୂତିର କଥା । ତାକୁ ଆହୁରି ଭଲପାଇ ବସିଲି । କିଛି ଦିନ ପରେ ଭାବିଲି ଚିତ୍ତଭାଇଙ୍କର ଲେଖା ସମସ୍ତଙ୍କ ପାଖରେ ପହଞ୍ଚାଇ ଦେବାରେ ମୁଁ ବି ନିମିତ୍ତ ହେବି । କାରଣ ମୋତେ ଲାଗୁଥିଲା ସେ ଲେଖା ସମସ୍ତଙ୍କ ପାଖରେ ପହଞ୍ଚିବା ଦରକାର । ଏହିପରି ଭାବରେ ପାଠକରୁ ମୁଁ ପାଲଟି ଗଲି ପ୍ରକାଶକ ।

ତା'ପରେ ମନକୁ ଆଉ ଗୋଟିଏ ଭାବନା ଆସିଲା । ଚିତ୍ତଭାଇଙ୍କୁ ଯେଉଁମାନେ ଭଲ ପାଉଛନ୍ତି, ଯେଉଁମାନେ ତାଙ୍କ ସଂପର୍କରେ ଆସିଛନ୍ତି ସେମାନଙ୍କ ଭିତରେ ଗୋଟିଏ ପାରସ୍ପରିକତା ଓ ସଂପର୍କର ଡୋର ଲଗାଇଲେ କେମିତି ହୁଅନ୍ତା ! ଏବଂ ଏ ଦିଗରେ ମୁଁ ଆଗେଇଲି । ଚିତ୍ତଭାଇଙ୍କ ବିଷୟରେ ବନ୍ଧୁମାନଙ୍କଠାରୁ ଅନୁଭୂତିମୂଳକ ଲେଖା ସଂଗ୍ରହ କଲି ଓ ତାହାରି ପରିଣାମ ସ୍ୱରୂପ ପ୍ରକାଶ ପାଇଲା 'ପରାର୍ଥ ପଥିକ' । ଏହାର ସଂକଳନ ଓ ସଂପାଦନା କାର୍ଯ୍ୟରେ ସାହାଯ୍ୟ କଲେ ରବିଭାଇ (ଶ୍ରୀ ରବୀନ୍ଦ୍ର ନାଥ ପାଢ଼ୀ) ।

'ପରାର୍ଥ ପଥିକ'ର ପ୍ରଥମ ଖଣ୍ଡ ପ୍ରକାଶିତ ହେଉ ହେଉ ଦ୍ୱିତୀୟଖଣ୍ଡ ପ୍ରକାଶନ ପାଇଁ କାମ ଆରମ୍ଭ ହୋଇଗଲା । ଏ କ୍ଷେତ୍ରରେ ବହିଟିକୁ ରୂପଦେବାରେ ତଥା ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ରବିଭାଇଙ୍କୁ ସାହାଯ୍ୟ କଲେ ଅଧ୍ୟାପକ ପ୍ରଫୁଲ୍ଲ କୁମାର ମିଶ୍ର, ସନ୍ତୋଷ କୁମାର ମିଶ୍ର ଓ ଭାଗ୍ୟଲକ୍ଷ୍ମୀ ସାହୁ । ଏମାନେ ଏମାନଙ୍କର ବହୁମୂଲ୍ୟ ସମୟ ଦେଇ 'ପରାର୍ଥ ପଥିକ' ପ୍ରକାଶନ କାର୍ଯ୍ୟଟିକୁ ସୁଚାରୁ ରୂପେ ଆଗକୁ ନେଇ ଯିବାରେ ସହଯୋଗ କରିଛନ୍ତି । ଏଣୁ ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି । ତୃତୀୟ ଭାଗ ପାଇଁ ମଧ୍ୟ ଲେଖାମାନ ଆସିଗଲାଣି । କେତେ ଆଉ କେତେ ଚିଠି ଆସୁଛି । ସେସବୁ ପ୍ରକାଶକକୁ ଉତ୍ସାହିତ କରିବାରେ ଓ ଆଗକୁ ଯିବାରେ ଅନେକ ସାହାଯ୍ୟ କରୁଛି ଓ କରିବ । ଶେଷରେ ବିନୀତ ଅନୁରୋଧ ଚିତ୍ତଭାଇଙ୍କ ଉଦ୍ଦେଶ୍ୟରେ ଏଇ ଶ୍ରଦ୍ଧା ଅର୍ଘ୍ୟ ନିବେଦନ ନିମନ୍ତେ ଲେଖାଟିଏ ପଠାଇ ଆପଣ ଆମକୁ ସହଯୋଗ କରିବେ ।

—ପ୍ରକାଶକ

# ଚିହ୍ନା ମାଟିର ବାସ୍ନା (୨)

ଏଥିମଧ୍ୟରେ ମୁଁ ବ୍ରହ୍ମପୁର ବଦଳି ହୋଇ ଆସି ସାରିଥାଏ । ଝିଅ ନୂଆ ହୋଇ ସେଇଠି ପାଠପଢ଼ିଲା ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ । ପାଠଚକ୍ର ସହିତ ଯଦିଓ ସମ୍ପର୍କ ଥିଲା ତଥାପି ତାହା ସାମାନ୍ୟ କମି ଯାଇଥିଲା । ପ୍ରତିଦିନ ସ୍କୁଲକୁ କିନ୍ତୁ ଦୁଇଥର ଯିବାରେ କ୍ରମଶଃ ସେଠିକାର ଭାଇ ଓ ଅପାମାନଙ୍କ ସହିତ ଅଭିଭାବକ ହିସାବରେ ପରିଚୟ ହେଲା । ଦିନେ ବିଦ୍ୟାଳୟର ଅଧ୍ୟକ୍ଷ ଆଦିତ୍ୟ କୁମାର ତ୍ରିପାଠୀ ମତେ ପଚାଶ ଟଙ୍କା ଚାନ୍ଦା ମାଗିଲେ । କହିଲେ, "ସ୍କୁଲରେ ଦଶଦିନିଆ ଶ୍ରମଶିବିର ହେବ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଶହେରୁ ଊର୍ଦ୍ଧ୍ୱ ଶିବିରାର୍ଥୀ ଆସିବେ । ଶିବିରରେ ଶ୍ରୀଅରବିନ୍ଦଙ୍କ ରଚିତ ମୂଳଗ୍ରନ୍ଥ ଅଧ୍ୟୟନ ଓ ଆଲୋଚନା ସହିତ ଦୈନିକ ଚାରି ଘଣ୍ଟା ମାଟିକାମ କରାଯିବ । ଭୋର ପାଞ୍ଚଟାରୁ ରାତି ଦଶଟା ପର୍ଯ୍ୟନ୍ତ ଶିବିରର ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳିତ ହେବ । ପରିଚାଳନା କରିବେ ଓଡ଼ିଶାର ବିଶିଷ୍ଟ ପ୍ରାବନ୍ଧିକ ଚିତ୍ତରଂଜନ ଦାସ ।" ମୁଁ ଏହି କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିବା ପାଇଁ ମଧ୍ୟ ସେ ନିମନ୍ତ୍ରଣ ଜଣାଇଲେ । ଏକା ନିଃଶ୍ୱାସରେ ଏସବୁ କହି ମୋଠାରୁ ପଚାଶ ଟଙ୍କା ନେଇ ରସିଦ୍ ଦେଇଦେଲେ ।

'ଶ୍ରମ ଶିବିର' ନାଁଟା ନୂଆ ନୂଆ ଲାଗୁଥିଲା । ନୂଆ ଲାଗୁଥିଲା ମଧ୍ୟ ଚିତ୍ତରଂଜନ ଦାସଙ୍କ ନାମ । ଏ ଦୁଇବର୍ଷ ଭିତରେ ପାସୋରି ପକାଇଥିଲି ପୂର୍ବର ଚିତ୍ତରଞ୍ଜନଙ୍କୁ । ସେ ଭଲପାଇବାର ଯେଉଁ ଆୟୁଧଟି ମୋ ହାତରେ ଭଦ୍ରକରେ ଧରାଇ ଦେଇଥିଲେ ତାହା କାମ କରି ଚାଲିଥିଲା ମୋ ଅଲକ୍ଷ୍ୟରେ । କିନ୍ତୁ ଅସଲ କଥା ପାସୋର ଯାଇଥିଲେ । ବହୁତ ଭାବିବାପରେ ହଠାତ୍ ମନେ ପଡ଼ିଗଲା । ଆରେ ଇଏ ତ ସେଇ, ଯିଏ ମତେ କହିଥିଲେ ଛାତ୍ରଛାତ୍ରୀଙ୍କୁ ଭଲପାଇବା ପାଇଁ । ପୂର୍ଣ୍ଣାଙ୍ଗ ଶିକ୍ଷାର ଆଲୋଚନା ଅବସରରେ ସେଦିନ ଏହାହିଁ ଥିଲା ତାଙ୍କର ମୂଳକଥା । ଚେଷ୍ଟା ଲାଗିଲା । ଯେଉଁ ଘରପାଠ ମୋତେ ଦିଆଯାଇଥିଲା ତାହା

ନ' କରିଥିବାରୁ ଚୋରମୁହାଁ ଚାଟ ପରି ସାମ୍ନା କରିବାକୁ ବଡ଼ ଡର ଲାଗିଲା । ସକାଳେ ମାଟିକାମ ହେଉଥାଏ । ଭାବିଲି କାମବେଳେ ଗଲେ ଅନୌପଚାରିକ ଭାବରେ ନିଶ୍ଚୟ ମୁହାଁମୁହିଁ ଦେଖା ହୋଇଯିବ ଏବଂ ସେ ଠୋସ୍ କରି କାଳେ ମୋଠାରୁ ପାଠ ଆଦାୟ କରିବସିବେ । ବିଶ୍ୱାସ କରନ୍ତୁ, ଏଇଆ ଭାବି ମତେ ଡର ଲାଗିଲା । ଘରପାଠ ଆରମ୍ଭ ହୋଇଛି କି ନାହିଁ ମୋତେ ଜଣା ବି ନାହିଁ । ବିଷମ ସମସ୍ୟାରେ ପଡ଼ିଲି । ଏଣେ ଦେଖିବାକୁ ପ୍ରବଳ ପିପାସା । ତେଣେ ପାଠ ନ' କରିଥିବାରୁ ଚୋର ଚୋର ଭାବ । ଶିବିର କ'ଣ ଜାଣିବା ପାଇଁ, ପଂକ୍ତି ଭୋଜନରେ ଖାଇବାପାଇଁ ଆଗ୍ରହ । ଗୋଟାଏ ଉପାୟ ପାଞ୍ଚିଲି । ସଂଧ୍ୟାରେ ବହି ପଢ଼ା ହେଉଥାଏ । ଠିକ୍ କଲି ତାହାହିଁ ପ୍ରକୃଷ୍ଟ ସମୟ । ସଂଧ୍ୟା ବୈଠକରେ ଯୋଗଦେବା ସୁବିଧାଜନକ ହେବ । ଜାତି ଯିବ ନାହିଁ, କିନ୍ତୁ ପେଟ ପୂରିବ । ସଂଧ୍ୟା ବୈଠକ ଆରମ୍ଭ ବେଳକୁ ଯାଇ ପହଞ୍ଚିଗଲି । ଯେତେବେଳେ ସମସ୍ତେ ଧ୍ୟାନ କରୁଥାଆନ୍ତି ସେତିକିବେଳେ ଚୁପ୍ ଚୁପ୍ ଯାଇ ପଛରେ ନିରାପଦ ଦୂରତାରେ ବସିଲି । ଡେଙ୍ଗା ହୋଇଥିବାରୁ କାଳେ ସହଜରେ ବାରି ହୋଇପଡ଼ିବି ଏଇ ଆଶଙ୍କାରେ ପିଠି ସାମାନ୍ୟ ବଙ୍କାଇ ମୁଣ୍ଡ ନୁଆଁଇ ବସିଥାଏ । ସେଣେ ସିଏ ଶ୍ରୀଅରବିନ୍ଦଙ୍କ ମୂଳଗ୍ରନ୍ଥ ପଢ଼ି ଆଲୋଚନା କରୁଥାଆନ୍ତି । ଅନେକ ଶ୍ରୋତା ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରୁଥାଆନ୍ତି । ସେଥିମଧ୍ୟରୁ ଜଣେ ତରୁଣଙ୍କର ନାମ ବାରମ୍ବାର ସିଏ ଉଚ୍ଚାରଣ କରୁଥାଆନ୍ତି । ସେ ହେଲେ 'ମଦନ', ଡାକ୍ତରୀ ଛାତ୍ର । ଅନେକ ତରୁଣ, ତରୁଣୀ, ବୃଦ୍ଧବୃଦ୍ଧା ଶ୍ରୋତାଙ୍କ ଭିତରେ ଥାଆନ୍ତି । ଏମିତି ସମାବେଶର ଅନୁଭୂତି ଆଗରୁ ନ ଥିଲା । ପରିବେଶ ସତେ ଯେପରି ଆଗାମୀର ପ୍ରସ୍ତୁତିଶାଳା ପରି ମନେ ହେଉଥିଲା । ସତ କହିଲେ ମୋର ପୁରୁଣା ମନଟା ଆଦୌ ସେଇ ପରିବର୍ତ୍ତନମୁଖୀ ସଚେତନ ପରିବେଶକୁ ପୂରା ଗ୍ରହଣ କରିପାରୁ ନ ଥିଲା । ନିଜ ଭିତରର କିଛି ଅଂଶ ବିରୋଧ କରୁଥିଲା । ତଥାପି ସିଏ ଯାହା କହୁଥିଲେ ଯୁକ୍ତିଯୁକ୍ତ ମନେହେଉଥିଲା, ଜ୍ଞାନର ଗଭୀରତା ଏବଂ ଅନୁଭବର ସାନ୍ଦ୍ରତା ମଧ୍ୟ ଜଣାପଡୁଥିଲା । ତଥାପି ଏତେ ଉଚ୍ଚକୁ ଉଡିଯିବା ପାଇଁ ମୋ ଭିତରେ ପାର୍ଥିବ ଚେତନା ଆଦୌ ରାଜି ହେଉ ନ ଥିଲା । ଯେଉଁ କଥା ସବୁ ପଢ଼ିଥିଲା ସେଥିରେ ତର୍କ ବିତର୍କ ମଧ୍ୟ ହେଉଥିଲା ।  ମନେ ଅଛି ସେଠିକାର ଜଣେ ପୁରାତନ ମାତୃକର୍ମୀ, ପ୍ରବୀଣ ସଂଗଠକ ଏବଂ ଲେଖକ ସାଧୁଚରଣ ପଟ୍ଟନାୟକ ଆଲୋଚନା

ପ୍ରସଙ୍ଗରେ ନିଜର ମତ ଉପସ୍ଥାପନ କରୁଥିଲେ । ଉତ୍ତର କିନ୍ତୁ ସବୁ ଉଡାଇ ନେଇ ଯାଉଥିଲା । ଶେଷକୁ ପ୍ରଶ୍ନକର୍ତ୍ତା ନିରସ୍ତ୍ର ହେବାଭଳି ବୋଧ ହେଉଥିଲା । ମଝିରେ ମଝିରେ ଚିତ୍ତଭାର ସନ୍ଦେହ ମୋଚନ ପାଇଁ ମାଆ ଶ୍ରୀଅରବିନ୍ଦଙ୍କର ମୂଳ ଲେଖାର ଅବତାରଣା କରୁଥିଲେ, ଏପରିକି ପୃଷ୍ଠା ସଂଖ୍ୟା ମଧ୍ୟ କହିଦେଉଥିଲେ । ପ୍ରଥମ ଦିନର ଆଲୋଚନା ମତେ ଗୋଟିଏ hot chamber ଭିତରେ ଶୁଣିବା ଭଳି ଲାଗିଲା । ପୂର୍ବରୁ ଥିବା ଅନେକ ଧାରଣା, ବିଶ୍ୱାସ, ମତ ଏବଂ ଧାରା ଉପରେ ପ୍ରଚଣ୍ଡ କ୍ଷେପଣାସ୍ତ୍ର ମାଡ଼ ହେଲା । ଅବଶ୍ୟ ମୁଁ ଚିହ୍ନା ପଡୁ ନ ଥିଲି ସିନା କିନ୍ତୁ ମୋରି କିସମର ମଣିଷ ସେଠି ଅଭାବ ନ ଥିଲେ ।

ଦୁଇଘଣ୍ଟା ମତେ ଦୁଇ ଯୁଗ ପରି ଲାଗିଲା । ତାଙ୍କୁ ଲୁଚି ବସି ଶୁଣିବା ପାଇଁ ଯାଉଥିଲି । ମାତ୍ର ଏବେ ତାଙ୍କ ପ୍ରତି ଥିବା ପୂର୍ବର ସବୁ ସମ୍ମାନ, ଶ୍ରଦ୍ଧା ଉଭେଇ ଯାଇ ତା' ସ୍ଥାନରେ ବିଦ୍ରୋହ ଭାବ ଆସିଲା । ମନେ ମନେ ମଧ୍ୟ ଘୃଣା କରିବାପାଇଁ ପଛାଇ ନଥିଲି । ବିଶେଷ ବିଚଳିତ ହୋଇଥିଲି ଏଇଥିପାଇଁ ଯେ ସେ ମୋ ଭିତରର ସବୁ ପୂର୍ବଗଠନକୁ ଭାଙ୍ଗି ଚୁର୍‌ମାର କରିଦେଲେ ବୋଲି । ଯଥାର୍ଥରେ ସେ ମୋ ଭିତରର ଶାନ୍ତି ଭଙ୍ଗ କରିଥିଲେ । ଭକ୍ତର ହୃଦୟ ଏଥର ଗୁରୁଙ୍କ ସହ ସମରାଭ୍ୟାସ ପାଇଁ ପ୍ରସ୍ତୁତ ହେଲା । ସେତେବେଳକୁ ମୋ ଭିତରଟା ପୂରା କ୍ଷତାକ୍ତ ହୋଇ ସାରିଲାଣି । ମୁଁ ଦୋହଲିଗଲିଣି । ପ୍ରାୟ ପନ୍ଦର ବର୍ଷର ତଥାକଥିତ ପ୍ରୟାସ ଏବଂ ଲବ୍ଧ ଫଳର ମୂଳ ସେତେବେଳକୁ ଦୋଳାୟମାନ ଅବସ୍ଥାରେ । ସଭା ସରିଲା । ଯେତେବେଳେ ସମସ୍ତେ ଧ୍ୟାନ କରୁଥିଲେ, ସୁବର୍ଣ୍ଣ ସୁଯୋଗ ମଣି ଚୁପ୍ ଚାପ୍ ବାହାରକୁ ପଳାଇ ଆସିଲି ଏବଂ ଏକମୁହାଁ ହୋଇ ଘରକୁ ଗଲି ।

ଦ୍ୱିତୀୟ ଦିନ । ଘରୁ ପ୍ରସ୍ତୁତ ହୋଇ ଯାଇଥାଏ । ମୋରି ପରି ଅନେକଙ୍କର ସେତେବେଳେ ମାଆ ଶ୍ରୀଅରବିନ୍ଦଙ୍କର ମୂଳରଚନାକୁ ପାଠ୍ୟପୁସ୍ତକ ରୂପେ ମଂଜୁରି ପାଇଥାଏ ମା' ବହି । ସେଇଟି ଭଲ କରି ପଢ଼ି ପ୍ରଶ୍ନ ପଚାରିବାପାଇଁ ଭାବି ସଭାକୁ ଗଲି । ପୂର୍ବ ସଂଧ୍ୟାରେ ତ' ମୋର ମୂଳଦୁଆ ଦୋହଲି ଯାଇଥାଏ । ଏଣୁ ପ୍ରତିଶୋଧର ବହ୍ନି ମନ ଭିତରେ ଜଳୁଥାଏ । ଆମରି ପରି ଏକାନ୍ତ ଅନୁଗତ ଭକ୍ତମାନଙ୍କୁ ଏଇ ପାଠୁଆ ମଣିଷ ଜଣକ ଦୋହଲାଇ ଦେଉଥିବାରୁ ତାଙ୍କର ଜ୍ଞାନ ଉପରେ ଦାଉ ସାଧିବାପାଇଁ ସ୍ଥିର କରିଥାଏ । ଏହିପରି ଏକ ବିଚାର ମନକୁ ଆବୋରି ବସିଲା, ''ଯେ ବହୁ ପାଠ ପଢ଼ିଥିବାରୁ ଏବଂ ବହୁ ଦେଶ ବୁଲିଥିବାରୁ

ଅନେକ କଥା ଜାଣିଛନ୍ତି ସତ, ମାତ୍ର ଭକ୍ତ ନୁହଁନ୍ତି, ଜ୍ଞାନୀ । ଏବଂ ସେହି ଜ୍ଞାନ ବଳରେ ଆମଠାରୁ ଭକ୍ତିର କୁସୁମଟିକୁ ଛିଣ୍ଡାଇ ନେଉଛନ୍ତି ।'' ସଭା ଆରମ୍ଭ ହେଲା ଏବଂ ସମସ୍ତେ ଆଖି ବୁଜିଥିବା ସମୟରେ ମୁଁ ପୂର୍ବଦିନ ପରି ଚୁପ୍ ଚାପ୍ ଯାଇ ପଛରେ ବସିପଡ଼ିଲି । ଆଲୋଚନା ଚାଲିଥାଏ । ମାତ୍ର ମୋ ମନ ସେଥିରେ ନ'ଥାଏ । ସୁଯୋଗ ଖୋଜୁଥାଏ କେମିତି ପ୍ରଶ୍ନ ପଚାରି ପ୍ରମାଣ କରିଦେବି ଯେ ଯେ ଆମକୁ ଯାଦୁ ସ୍ୟାଦୁ କହି ଠକୁଛନ୍ତି । ବହୁ ପ୍ରସ୍ତୁତି ପରେ ଗୋଟିଏ ପ୍ରଶ୍ନ ପଚାରିବାକୁ ଠିକ୍ କରି ଠିଆ ହେବାକୁ ଯାଉଛି, ଶୁଣିଲି ସେ ଅବିକଳ ସେଇ ପ୍ରଶ୍ନର ଉତ୍ତର ଦେଉଛନ୍ତି । ପୁଣି କୋଉ ବହିରେ କୋଉ ପୃଷ୍ଠାରେ ତାହା ଅଛି ମଧ କହୁଛନ୍ତି । ଲଥ୍ କରି ବସିପଡ଼ିଲି । ଆରେ ! ମୋ ପ୍ରଶ୍ନଟା ପୁଣି କିଏ ପଚାରିଦେଲା ! ହଉ, ସ୍ଥିର ହୋଇ ବସିଲି । ମନଟା ତ' ଖୁତୁରୁ ଖୁତୁରୁ ହେଉଥାଏ । ବସିପାରୁଛି କୋଉଠି ! ତୂଣୀରରୁ ଦ୍ୱିତୀୟ ଶର ବାହାର କରି ନିକ୍ଷେପ କରିବାକୁ ଉଦ୍ୟତ ହୁଅନ୍ତେ ଦେଖିଲି ଯେ ସେ ତା'ର ମୁକାବିଲା କରିବାପାଇଁ ଅମୋଘ ଅସ୍ତ୍ରଟିଏ ଛାଡୁଛନ୍ତି । ପୁଣି ସେଇ ବହିର ପୃଷ୍ଠା ସଂଖ୍ୟା ଉଦ୍ଧାର କରି ପ୍ରମାଣ ଦେଉଛନ୍ତି । ଚହଲି ଗଲି । ଯେ କ'ଣ ? ଇଏ କେମିତି ମୋ ପ୍ରଶ୍ନ ସବୁ ଜାଣିପାରିଲେ ! ଉତ୍ତରଗୁଡ଼ାକ ଶବ୍ଦ ପରି ଲାଗୁ ନ ଥିଲା । ଲାଗୁଥିଲା ଯେସନ ବାଟୁଳି ପ୍ରାୟ । ଘାଇଲା ହୋଇଗଲି ନିଜେ । ମନଟା ଟିକିଏ ଦବି ଗଲା । ପୁଣି କିଛି ସମୟ ପରେ ପୁନର୍ବାର ମୋର ତୃତୀୟ ପ୍ରଶ୍ନ ପୁଚ୍ଛା କରିବା ପାଇଁ ଶରୀର, ପ୍ରାଣ ଓ ମନର ସମସ୍ତ ଶକ୍ତି ଏକାଠି କରି ଉଦ୍ୟତ ହୁଅନ୍ତେ ସ୍ନିଗ୍ଧତାଭରା ବାତ ପ୍ରଭାବରେ ପ୍ରମୋଦିତ ହେଲି । ବାପ୍‌ରେ ବାପ୍ !! ତୃତୀୟ ପ୍ରଶ୍ନଟି ସବୁଦିନ ପାଇଁ ମୋର ଶେଷ ପ୍ରଶ୍ନ ହୋଇ ରହିଗଲା । ଆକାଶର ଆସ୍ପର୍ଦ୍ଧା କରିଥିବାରୁ ମାଟି ଛୁଇଁବାକୁ ହେଲା । ମୁଁ ତଳେ ଲାଗିଲି ।

ସୁହୃଦ ଶ୍ରମଶିବିର କଥା । ବର୍ଷରେ ଦୁଇଥର ମେ' ଏବଂ ଡିସେମ୍ବର ମାସର ଶେଷ ଦଶଦିନ ଓଡ଼ିଶାର ବିଭିନ୍ନ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ପ୍ରାୟ ଅଠର ବର୍ଷ ହେବ ନିୟମିତ ହୋଇଆସୁଛି । କଥିତ ବର୍ଷ ନବରଙ୍ଗପୁର ଜିଲ୍ଲାର ଇନ୍ଦ୍ରାବତୀ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ହେଉଥାଏ । ଇତ୍ୟବସରରେ ବ୍ରହ୍ମପୁର ପାଠଚକ୍ରରେ କେତେଜଣ ବନ୍ଧୁ ମୋର ନିକଟତର ହେଲେଣି । ସେମାନଙ୍କ ମଧ୍ୟରୁ ଆଶିଷ ପାଠୀ ଓ ବରେନ୍ଦ୍ର ନାରାୟଣ ସାହୁ ବେଶୀ ଲାଗି ଆସିଥିଲେ । ସେ ଦୁଇଜଣ ମତେ ଲଗେଇଲେ

ଇନ୍ଦ୍ରାବତୀ ଶ୍ରମ ଶିବିର ଯିବାକୁ । ଦଶଦିନ ଯାକ ପଢ଼ାହେବ ମା' ବହି । ତା' ବ୍ୟତୀତ ମାଟିକାମ, ମୁକ୍ତ ଆଲୋଚନା ତ' ହେବାର କଥା । ଆଲୋଚନା କରିବେ ଚିତ୍ତରଞ୍ଜନ ଦାସ । ଏହା ଶୁଣି ମତେ ଥୋପରେ ପଡ଼ିଲା ଭଳି ଲାଗିଲା । ଦଶଦିନରେ ଚାଳିଶ ଘଣ୍ଟା ଏତେ ଛୋଟ ବହି ବିଷୟରେ କଅଣ ଆଲୋଚନା ହେବ ଭାବି ଆଶ୍ଚର୍ଯ୍ୟ ହେଲି । ପାଠଚକ୍ରରେ ପ୍ରାୟ ସମସ୍ତେ ମା' ବହି ପାଠ କରନ୍ତି, ଆଲୋଚନା ମଧ ହୁଏ । ସିଏ ତ' ପାଠଚକ୍ର ସମୟ ଘଣ୍ଟାଏ ମଧ୍ୟରୁ ପନ୍ଦର ମିନିଟ୍ । ସେତିକିରେ ତ' ଆମର କହିବାର stock ସରିଯାଏ । ଶେଷରେ ଆଉ କଅଣ ଟିକିଏ ପଢ଼ି କିମ୍ବା ନବପ୍ରକାଶ ପଢ଼ି ପାଠଚକ୍ର କାମ ବଢ଼ାଇ ଦେଉ । ଏଠି ଦଶଦିନ କଅଣ ସିଏ କହିବେ ! ଭାବିଲି "ଯେ ଯାଙ୍କର ଗୋଟାଏ ଚାଲ୍ । ମା' ବହି ଶୁଣିବା ଆଳରେ ଅନେକ ସେଠି ଜୁଟିବେ । ସେଠି ମା' ବହି ଦିନ ଗୋଟାଏ କିମ୍ବା ଦୁଇଟାରେ ସାରିଦେଇ, ନିଜ କଥା ବଖାଣିବେ । ପୁଣି ଭାବିଲି, ଆଚ୍ଛା, ଥରେ ଯାଇ ଦେଖିଆସିବା କ'ଣ ସେ 'ସୁହୃଦ୍ ଶିବିର' । କଅଣ ସେଠି ସବୁ ହୁଏ । ଆଉ ମା' ବହି ଯାହା ଆମ ଅନେକଙ୍କର ଜପାମାଳି ଏବଂ ଶ୍ରୀଅରବିନ୍ଦଙ୍କ ସମସ୍ତ ଲେଖାର ସାର ସେ ବିଷୟରେ ଇଏ କ'ଣ କହୁଛନ୍ତି ।"

ଆମେ ତିନିହେଁ ଗଲୁ । ଆଶିଷଭାଇ ଓ ବରେନ୍ଦ୍ରଭାଇ ମୋ ସାଙ୍ଗ ଛାତ୍ର ନ ଥା'ନ୍ତି । ଶିବିରରେ ପାଞ୍ଚଦିନ ରହିଲୁ । ସରିବାକୁ ଦିନେ କି ଦୁଇଦିନ ଥାଏ ବାହୁଡ଼ି ଆସିଲୁ । ଶହେରୁ ବେଶୀ ମଣିଷ ଏକାଠି ହୋଇଥିଲେ । ସମାଜର ବିଭିନ୍ନ ବର୍ଗ ଏବଂ ସ୍ତରର ମଣିଷ । ଆଖି ଫିଟି ଫିଟି ଯାଉଥାଏ ସେଠିକାର ବ୍ୟବସ୍ଥା ଦେଖି । ମୋ ପାଇଁ ଏକବାରେ ନୂଆ । ଏତେ ମଣିଷଙ୍କ ମେଳରେ ଦିନଚର୍ଯ୍ୟା ମୋ ଜୀବନରେ ଘଟିନଥିଲା । ଗୋଟାଏ ପ୍ରକାର ମୁକ୍ତତାର ସ୍ନିଗ୍ଧ ସ୍ପର୍ଶ ଦେହ, ପ୍ରାଣ, ମନ ଓ ହୃଦୟକୁ ଛୁଇଁ ଯାଉଥାଏ । ପ୍ରଥମେ ପହଞ୍ଚି ବେଶ ବଦଳାଇ ଲୁଙ୍ଗି ଓ ସାର୍ଟଟାଏ ପିନ୍ଧି ପୂର୍ବାହ୍ନ ଅଧିବେଶନ ଚାଲୁଥିବା ସମୟରେ ପହଞ୍ଚିଗଲି । ସ୍କୁଲ ମଝିରେ ଥିବା ଏକ ପ୍ରଶସ୍ତ ଚାନ୍ଦିନୀରେ ସମସ୍ତେ ବସିଥାଆନ୍ତି । ଉପରେ ଆଜବେଷ୍ଟସ୍‌ର ଛାତ ଥାଏ, ଦୁଇପାଖ ଖୋଲା, ଆଉ ଦୁଇପଟକୁ ଘର ଥାଏ । ଦୂରରୁ ଦେଖି ପଢ଼ା ବନ୍ଦ କରି ପଚାରିଦେଲେ, "କଅଣ ଏଇ ବେଶରେ ବ୍ରହ୍ମପୁରରୁ ଆସିଥିଲେ ?" କଥା ପଦକରେ ଅନେକ କଥା ଥିଲା । ବହୁତ ଭଲ ଲାଗିଲା, ଏଇଥିପାଇଁ ଯେ ସେ ପ୍ରତି ମଣିଷକୁ ଗୁରୁତ୍ୱ ଦେଉଛନ୍ତି । ମୋତେ ସାଉଁଟି ଆଣିଲେ

ଏକପ୍ରକାର ତାଙ୍କର ସସ୍ନେହ ଅନ୍ତର୍ଭେଦୀ ଦୃଷ୍ଟି ଦ୍ୱାରା । ଅନୁଭବ କଲି ସଂସାରରେ କେହି ବି ଅଲୋଡ଼ା ନୁହେଁ, ଏକାନ୍ତ ଅପରିହାର୍ଯ୍ୟ । ସେଠାରେ ରହିବା, ଖାଇବା ଇତ୍ୟାଦିର ସୁନ୍ଦର ବ୍ୟବସ୍ଥା ହୋଇଥିଲା । ଆଲୋଚନାଟି ମତେ ବେଶୀ ଆକୃଷ୍ଟ କଲା । ଦିନକୁ ତିନି ଚାରି ଘଣ୍ଟା ମାଟି ଖୋଳୁଥିଲୁ ଖୁସୀରେ । ସେଇ ଯୋଉ ପଥର ପରି ମାଟି ! ଗାଣ୍ଡିଆରେ ହାତକୁ ହାତ ବଢ଼ାଉଥିଲୁ । ବେଳେ ବେଳେ ହାତକୁ ହାତ ଫୋପାଡୁଥିଲୁ ତୀର ବେଗରେ ।

ମା' ବହି ଆଲୋଚନା ସମୟରେ ସିଏ କେତେ କଥା କହୁଥିଲେ । ମୋ ପକ୍ଷରେ ସବୁ କଳନା କରିବା ମୁସ୍କିଲ୍ ଥିଲା । ଏତେ ଛୋଟିଆ ବହି ଭିତରୁ କେତେ ଯେ କ'ଣ ବାହାରିପାରେ ତା'ର ପ୍ରମାଣ ମିଳିଲା । ପ୍ରଶ୍ନ ମଧ ପଚରାଯାଉଥିଲା । ଅନେକ ମଧ ଆଲୋଚନାରେ ଅଂଶ ଗ୍ରହଣ କରି ନିଜ ଦୃଷ୍ଟିରୁ କିଛି କିଛି କହୁଥିଲେ । ଗୋଟିଏ କଥା ସେଠି ଦେଖିବାକୁ ମିଳିଲା ।  ଜଣେ କେହି ନିଜ କଥା କହିବାବେଳେ ସେ ଧିରସ୍ଥିର ହୋଇ ଶୁଣୁଥିଲେ ଏବଂ ତା'ପରେ ଯାଇ କହୁଥିଲେ । ଇଏ କିଛି କମ୍ କଥା ନୁହେଁ । ଉପରେ ଥିବା ଜଣେ ତଳକୁ ଓହ୍ଲାଇ ଆସିବା ସଚରାଚର କ୍ୱଚିତ୍ ଦେଖାଯାଏ । ବ୍ୟକ୍ତିକୁ ସମ୍ମାନ ଦେବା (ସେ ଯେ କେହି ହେଉ), ତା' କଥା ଶୁଣିବା ଏବଂ ତା'ପରେ ନିଜ କଥା କହିବା ଲୋକ ସମାଜରେ ଖୋଜିବାପାଇଁ ପଡ଼ିବ । ବହୁତ ଗଭୀରରେ ଆଲୋଚନା ହେଉଥିଲା । ମତେ ଅଧିକାଂଶ କଥା ପୂରା ନୂଆ ଲାଗୁଥିଲା, ତଥାପି ଛୁଉଁଥିଲା । ଥରକର କଥା ମନେ ଅଛି । ସେ ପରିବେଶ ମଧ ଆଖି ଆଗରେ ନାଚିଉଠୁଛି । ବୋଧହୁଏ ଅପରାହ୍ନ ଅଧିବେଶନ । କ'ଣ ପଢ଼ାହେଉଥିଲା ଠିକ୍ ମନେ ନାହିଁ । ତଥାପି ଯାହା ଛାପ ରହିଛି ସେଥିରୁ କହିବି ଯେ ମାଆଙ୍କ କଥା ପଢ଼ିଥିଲା । କେହି କେହି ନିଜର ଖଣ୍ଡିଆ ଦୃଷ୍ଟିଟି ଆଣି ଥୋଉଥିଲେ ଏବଂ ତଦ୍‌ଜନିତ କୃତକୃତ୍ୟ ଭାବ ମଧ ମୁହଁରେ ଫୁଟାଉଥିଲେ ଚେଷ୍ଟାକରି । ସେନାପତି ସବୁ ଶୁଣିଲେ ଶୁଣିଲେ, ତା'ପରେ ଲମ୍ଫପ୍ରଦାନ କଲେ । ବାପ୍‌ରେ ସେ ଯୋଉ ତୁବନ ! ପୂରା କେଉଁ ତଳୁ ଉଠିଲେ ଯେ ଶିଖର ସ୍ପର୍ଶ କରି କ୍ରମଶଃ ବିସ୍ତାରିତ ହୋଇଗଲେ । ମୁଁ ଆଖିରେ ଅନାଇଥାଏ । ଆଖିକୁ କିଛି ଦିଶୁ ନ'ଥାଏ ସତ, ମାତ୍ର ଭିତରେ କାହାର ପ୍ରଚଣ୍ଡ ସ୍ପର୍ଶ ଅନୁଭବ କରୁଥାଏ । ବୈଠକ ସାରା ନିସ୍ତବ୍ଧତା । ସମସ୍ତେ ଚୁପ୍ । ବାହାରେ ତ' ଚୁପ୍, ଭିତରେ ମଧ ଅନେକ ଚୁପ୍ ହୋଇ ଯାଉଥିବାର ଇସାରା ମିଳୁଥିଲା ।

ଆଗ୍ନେୟଗିରିର ଲାର୍ଭା ପରି ଥିଲା ସେ ବକ୍ତବ୍ୟ । ମାଆଙ୍କୁ କେତେ ଭଲପାଇଲେ ଜଣେ ତାଙ୍କ କଥା କହିପାରେ ! ସେତେବେଳେ ଗୁରୁଗମ୍ଭୀର କଣ୍ଠରେ ଯାହା ଧ୍ୱନିତ ହେଉଥିଲା ସତରେ ତାକୁ କେବଳ ପ୍ରତିଧ୍ୱନି ବୋଲି ହିଁ କୁହାଯାଇପାରିବ । ଆମର ଫେରିବା ସମୟ ହେଲା । ଉପରଓଳି ବୋଧହୁଏ । ପାଠପଢ଼ା ଚାଲିଥାଏ, ଆମେ ତିନିହେଁ ବାହାରିଲୁ । ଏକ ବ୍ୟତିକ୍ରମ ଲକ୍ଷ୍ୟ କଲି । ସିଏ ଆମ ପଛେପଛେ ଆଲୋଚନା ଅଧାରୁ ଉଠି ଫାଟକ ପାଖରେ ହାଜର । ଏପରି କେବେ ତାଙ୍କଠାରେ ମୁଁ ଦେଖିନାହିଁ । ଆସିବାବେଳେ ଆମକୁ ବହୁତ ବହୁତ କହିଲେ ଏବଂ ପରବର୍ତ୍ତୀ ଶିବିରମାନଙ୍କ ପାଇଁ ନିମନ୍ତ୍ରଣ ମଧ କଲେ । ଭାରି ଅଡୁଆ ଲାଗୁଥାଏ ମତେ । ଆମେ ଏପରି କ'ଣ ଯେ ସିଏ ନିଜେ ବୈଠକରୁ ଉଠି ବଳେଇ ଦେବାପାଇଁ ଫାଟକ ପାଖକୁ ଆସିଛନ୍ତି । ସେତେବେଳେ କିଛି ବୁଝିପାରି ନଥିଲି । ଏବେ ଅବା କ'ଣ ବୁଝୁଛି ଯେ ! ବୁଝିବା ଯେ' ଆହୁରି କେତେ ବାକି ରହିଛି ।

ସେଇ ବ୍ରହ୍ମପୁର କଥା । ରବିବାର ଅପରାହ୍ନରେ ସ୍କୁଲରେ ହେଉଥିବା ମିଳିତ ପାଠଚକ୍ରକୁ ନିୟମିତ ଯିବାକୁ ଲାଗିଲି । ପଢ଼ା ହେଉଥିଲା ମାତୃରଚନାବଳୀ ଆଶିଷଭାଇ ପ୍ରାୟତଃ ପଢୁଥିଲେ ଏବଂ ଅନ୍ୟମାନେ ମିଶି ଆଲୋଚନାରେ ଭାଗ ନେଉଥିଲେ । ସାଧୁଭାଇ, କାଶୀଭାଇ ଇତ୍ୟାଦି ଆହୁରି ବୁଝିବାରେ ନିମିତ୍ତ ପରି କାର୍ଯ୍ୟ କରୁଥିଲେ । ପାଠଚକ୍ର ଭଲ ଲାଗିଲା । ଥରେ ଆଶିଷଭାଇ କହିଲେ, ହାତୀଭାଇ ବଦଳି ହୋଇ ଆସିଲେଣି । ଏଣିକି ଶ୍ରୀଅରବିନ୍ଦଙ୍କ ମୂଳରଚନା ପଢ଼ିବା । ହାତୀଭାଇଙ୍କ ନାଆଁ ଶୁଣି ପ୍ରଥମେ ମତେ ହସ ଲାଗିଲା । ଇଏ ପୁଣି କିଏ ? ମନେ ମନେ ରୂପର କଳ୍ପନା କରିବାରେ ଲାଗିଲି । ଚାକ୍ଷୁସ ଦର୍ଶନରେ ମିଳାଇ ଦେଖିଲି ବେଶୀ କିଛି ଫରକ୍ ନାହିଁ । ଚାଲି ଯେମିତି, କଥା ବି' ସେମିତି, ସାହସ ପାହାଡ଼ ପରି । 'ହାତୀ'ଙ୍କ ଆଗମନରେ ନୂତନ ଶିହରଣ ମୋ ଠାରେ ଖେଳିଗଲା । ସଂଧ୍ୟାରେ ଏକାଠି ହେଉ । ସ୍କୁଲରେ ବଗିଚା କାମ କରୁ, ମାଟି ଖୋଳି ପାଖକୁ ଲାଗିଥିବା ପୋଖରୀ ପୋତୁ । ଖୁସୀ ଲାଗୁଥାଏ । ଦିନେ ହାତୀଭାଇ କହିଲେ, ''ଆମେ ଶ୍ରୀଅରବିନ୍ଦଙ୍କୁ ମୂଳଲେଖାରେ ପଢ଼ିବା । ଠିକ୍ ହେଲା ସୋମବାର, ବୁଧବାର ଓ ଶୁକ୍ରବାର ସଂଧ୍ୟାରେ ଯଥାକ୍ରମେ 'Letters on Yoga', The Synthesis of Yoga' ଓ 'The Human Cycle' ବହି ପଢ଼ିବା କଥାଟା ମନକୁ ପାଇଲା । ଶ୍ରୀଅରବିନ୍ଦଙ୍କ ରଚନା କଡ଼ା ବୋଲି ତ ଆଗରୁ

ଛୁଇଁନଥିଲି । ମାତ୍ର ପ୍ରବଳ ପିପାସା ଥାଏ ଜାଣିବାକୁ, ବୁଝିବାକୁ । ଯେଉଁଦିନ ପ୍ରଥମେ ବସିଲୁ ସେଦିନ ଆମ ଗହଣରେ ହାତୀଭାଇ ନଥିଲେ, ଥିଲେ କଟକରେ । ପଢ଼ିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କଲେ ଆଶିଷଭାଇ ଓ ବରେନ୍ଦ୍ରଭାଇ । ଆଉ ଜଣେ କିଏ ଥିଲେ ମନେ ପଡୁନାହିଁ । ସେଦିନ ଥିଲା ବୁଧବାର । 'ଯୋଗ ସମନ୍ୱୟ' ପଢ଼ା ହେବା କଥା । ଯେମିତି ହେଉ ପଛେ ଆଗ ଆରମ୍ଭ ହୋଇଯାଉ, ପରେ ଦେଖାଯିବ । ଏଇ ଝୁଙ୍କ୍‌ରେ ପଢ଼ାଆରମ୍ଭ ହେଲା । ପ୍ରଥମ ଅଧ୍ୟାୟଟି ଅପେକ୍ଷାକୃତ କ୍ଷୁଦ୍ର ପ୍ରବନ୍ଧଟିଏ । ଏଣୁ ଏକା ନିଃଶ୍ୱାସରେ ଆମୂଳଚୂଳ ପଢ଼ି ପକାଇଲି । ନିଜେ ତ' କିଛି ବୁଝି ପାରିଲି ନାହିଁ, ଆଉ ବୁଝାଇବି କ'ଣ ? ଅଧ୍ୟାୟ ଭିତରେ ଶ୍ରୀଅରବିନ୍ଦ କହୁଥିବା କଥା ସିନା ବୁଝି ପାରିଲି ନାହିଁ, ମାତ୍ର ବୁଝିଲି ଶେଷ ଆଡକୁ ଥିବା ସ୍ୱାମୀ ବିବେକାନନ୍ଦଙ୍କର ଏକ ବକ୍ତବ୍ୟ, "Yoga may be regarded as a means of compressing one's evolution into a single life. or a few years, or even a few months of bodily existence." ''ଆମେ ଯୋଗକୁ ଆପଣା ବିକାଶ ଓ ବିବର୍ତ୍ତନକୁ ଶାରୀର ଅସ୍ତିତ୍ୱର କେବଳ ଗୋଟିଏ ଜୀବଦ୍ଦଶା ବା କେବଳ କେତୋଟି ବର୍ଷ କିମ୍ବା ଏପରିକି ମାତ୍ର କେତୋଟି ମାସର ଅବଧି ଭିତରେ ହିଁ ସାଧିତ କରିପାରିବାର ଏକ ସାଧନ ବୋଲି କହିପାରିବା ।'' ମନକୁ ଘେନିଲା । ତିନିଦିନିଆ କ୍ଲାସ୍ ଚାଲିଲା । ମୂଳ ପ୍ରବକ୍ତା ହେଲେ ଅଧ୍ୟାପକ କୁମାର ଚନ୍ଦ୍ର ମିଶ୍ର, ଓ ପ୍ରଭାକର ହାତୀ । କାଶୀନାଥ ସାହୁ ଖୁବ୍ ଖୁସୀରେ ଆମ ସାଙ୍ଗରେ ବସନ୍ତି ଏବଂ ବୁଝାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି । ଶରତ ଚନ୍ଦ୍ର ଗୌଡ ଓ ଶ୍ୟାମଭାଇ ବି ଆମ ସାଙ୍ଗରେ ମିଶନ୍ତି ।

ବହିପଢ଼ା ଦିଗନ୍ତ ଖୋଲିବାରେ ସାହାଯ୍ୟ କଲା । ନିବିଡ଼ ଭାବରେ ଶ୍ରୀଅରବିନ୍ଦଙ୍କର ମୂଳ ଇଂରାଜୀ ରଚନାବଳୀ ଅଧ୍ୟୟନ ନିଷ୍ଠାର ସହ ପ୍ରାୟ ଦୁଇ, ତିନି ବର୍ଷ ଚାଲିଲା । ବିଭିନ୍ନ ଦିଗରୁ ଜୀବନ ଓ ଜଗତକୁ ବୁଝିବାର ଅବକାଶ ମିଳିଲା । ମୋ ଜୀବନରେ ଏଇ ଦୁଇ/ତିନି ବର୍ଷ ଉଦ୍‌ପ୍ରେରକ ରୂପେ କାମ କଲା । ମାଆ ଶ୍ରୀଅରବିନ୍ଦଙ୍କ ଯୋଗ ଓ ଦର୍ଶନ ବିଷୟରେ ଅଧିକରୁ ଅଧିକ ଅନୁଭବରେ ଆଣିବାପାଇଁ ପ୍ରେରଣା ମିଳିଲା । କେବଳ ଭକ୍ତି ଯେ ଦିଗହରା ହୋଇଯାଇପାରେ ! ଭକ୍ତି, ଜ୍ଞାନ ଓ କର୍ମର ସମନ୍ୱୟ ଅଭୀପ୍‌ସୁକୁ ପୂର୍ଣ୍ଣତା ଆଡ଼କୁ ନେଇଗଲେ । ସ୍ୱାଧ୍ୟାୟ ପୁରୁଣା ଆଖିଦୃଷ୍ଟିକୁ ବଦଳାଇବାରେ ନିମିତ୍ତ ହେଲା ।

ଶିବିର ପାଳରେ ପଡ଼ିଲି । ବର୍ଷକୁ ଦୁଇଥର ମେ' ଓ ଡିସେମ୍ବରର ଶେଷ ଦଶଦିନ ନୂଆ ଜୀବନର ପ୍ରୟୋଗଶାଳା ପରି । ଏହାର ଆକର୍ଷଣ ଅନୁଭବୀ ହିଁ ଜାଣିପାରିବ । ବାହାରେ ଥାଇ ଏଇ ଶିବିରଗୁଡ଼ିକ ସମ୍ବନ୍ଧରେ ଆକଳନ କରିବା ସମ୍ଭବପର ନୁହେଁ । ଅନେକ ଶିବିର ମଧ୍ୟରେ ଏହାର ବିଶେଷ ତାତ୍ପର୍ଯ୍ୟ ରହିଛି । ଯିଏ ନୂଆ ଆଖିରେ ନିଜକୁ ଜଗତକୁ ଏବଂ ଜଗତାତୀତଙ୍କୁ ଦେଖିବା ପାଇଁ ଚାହିଁବ, ସେ ହିଁ ଏହାର ଆକର୍ଷଣ ଠଉରେଇ ପାରିବ । ଏଥିରେ କର୍ତ୍ତୃତ୍ୱ କାହାରି ନ ଥାଏ । ସମସ୍ତେ ସବୁଥିରେ ଖୁସୀ ହୋଇ ଅଂଶଗ୍ରହଣ କରନ୍ତି । ଜୀବନକୁ ବାଧ ହୋଇ ନ' ଦେଖି ମିତ୍ରର ଆଖିରେ ଦେଖନ୍ତି । ଶ୍ରୀଅରବିନ୍ଦଙ୍କର କିମ୍ବା ମାଆଙ୍କର ମୂଳ ରଚନା ଏହି ଦଶଦିନ ପାଠପଢ଼ାର ବିଷୟବସ୍ତୁ । ଆଗ୍ରହୀମାନେ ଏକାଠି ହୋଇ ଆଲୋଚନା କରନ୍ତି । ଦ୍ୱନ୍ଦ୍ୱ ଦୂର ହୁଏ ପୁଣି ନୂଆ ରୂପରେ ଆସି ପହଞ୍ଚେ ସତ, ମାତ୍ର ପାହାଚ ପରେ ପାହାଚ ଜଳଜଳ ହୋଇ ଦିଶିଯାଉଥାଏ । ମଣିଷ ଏକବାରେ ତଳୁ ପୂରା ନିଦା ହୋଇ ଆଗକୁ ପାଦ ପକାଉଥାଏ । ଶିବିରରେ ମନର କର୍ଷଣ ସହିତ ଦେହର କର୍ଷଣ ମଧ୍ୟ ହୁଏ ଶ୍ରମ ମାଧ୍ୟମରେ । ଶାରୀରିକ ଶ୍ରମ ଶିବିରରେ କରାଯାଏ । ଶହେ ଦେଢ଼ଶହ ଅଣକୁଶଳୀ ମଣିଷ ସାଧାରଣତଃ ପୋଖରୀ ଖୋଳା, ମାଟି ସମତୁଲ, ନିଅଁ ଖୋଳା, ସ୍ଥଳବିଶେଷରେ ଆନୁଷଙ୍ଗିକ ଅନ୍ୟ ହାତ କାମ ଆଗ୍ରହରେ ସାମର୍ଥ୍ୟ ଅନୁଯାୟୀ କରିଥାଆନ୍ତି, ବାଧ ବାଧକତା ନ ଥାଏ । ଶିବିରର ସବୁଠାରୁ ମର୍ମସ୍ପର୍ଶୀ କାର୍ଯ୍ୟକ୍ରମ ହେଲା ସଂଧ୍ୟାରେ ହେଉଥିବା ମୁକ୍ତ ଆଲୋଚନା । ଏଥିରେ ଜଣେ କେବଳ ସଂଯୋଜନା କରନ୍ତି । ଜଣକ ପରେ ଜଣେ ନିଜକୁ ଶବ୍ଦ ମାଧ୍ୟମରେ ପ୍ରକାଶ କରନ୍ତି ନିଜ ମନ କଥା କହି । ଅବଶ୍ୟ ବିଷୟଟିଏ ସ୍ଥିର ହୋଇଥାଏ । ସେଇକଥା କହୁ କହୁ ନିଜର ଅନୁଭବ, ବୁଝିବା ଧାରା, ପ୍ରାପ୍ତି, ଦ୍ୱନ୍ଦ୍ୱ, ପ୍ରଶ୍ନ, ଅଙ୍ଗୀକାରବଦ୍ଧତା, ସଂକଳ୍ପ, ରୁଚି, ପ୍ରତ୍ୟୟ ଏପରିକି ଦୋଷଗୁଣ ମଧ୍ୟ ଅବଲୀଳା କ୍ରମେ ବାହାରିପଡ଼େ । ମଣିଷ ମେଳରେ ଏପରି ଅନ୍ତର ଖୋଲା ସ୍ୱୀକାରୋକ୍ତି ଆଉ କେଉଁଠାରେ ଦେଖିନାହିଁ ।

ଏଇ ଶିବିର ଚିତ୍ତଭାଇଙ୍କ ପ୍ରେରଣାସମ୍ଭୂତ । ହଉ ହଉ କେତେଜଣ ଏକାଠି ହୋଇ ଦଶଦିନ ଏଇପରି ପ୍ରଥମ ଶିବିରଟି ଯୋଡ଼ିଥିଲେ ବାଲେଶ୍ୱର ଜିଲ୍ଲାର ମାର୍କୋଣାରେ । କ୍ରମେ ଏହା ବିସ୍ତାରିତ ହେଲା ଓଡ଼ିଶାର କୋଣ ଅନୁକୋଣକୁ । ଶ୍ରମବିମୁଖତା ଦୂର କରିବାରେ ଶିବିର ସାହାଯ୍ୟ କରେ । ବିଭିନ୍ନ ଅଞ୍ଚଳର ଲୋକେ

ଏକାଠି ହୋଇ ପରସ୍ପର ସହିତ ମିଶନ୍ତି । ଏକାଠି ଦଶଦିନ ଜୀବନ ବଞ୍ଚିବା ଅନେକ ପ୍ରେରଣା ଓ ଶକ୍ତି ଦିଏ । ବନ୍ଧୁ ହେବାର କଳା ଶିଖାଏ । ମିତ୍ରର ଦୃଷ୍ଟିରେ ପରସ୍ପର ଚିହ୍ନା ହୁଅନ୍ତି । ନେତୃତ୍ୱ ଗୋଟାଏ ନିଆରା କଥା । ନେତା ସଦାବେଳେ ଆଗରେ ଥାଏ, ମାତ୍ର ଅନ୍ୟମାନଙ୍କ ଠାରୁ କିଛି ଦାବୀ କରୁନଥାଏ । ବରଂ ଉତ୍ସାହିତ କରୁଥାଏ, ଟାଣ କରୁଥାଏ, ନିଜକୁ ଅକାତରରେ ଅର୍ପଣ କରିପାରୁଥାଏ, କପଟ ନଥାଏ, ନୈକଟ୍ୟ ହିଁ ଥାଏ । ଚିଉଭାଇ ଏଇ ଜାତର ନେତା । ନିଜେ ସବାଆଗ ଉଠନ୍ତି, କାମରେ ଆଗରେ, ପଢ଼ାରେ ଆଗରେ, ଆଲୋଚନାରେ ଅତି ପାଖରେ, ଦୈନନ୍ଦିନ ଜୀବନଚର୍ଯ୍ୟାରେ ଅଗ୍ରଣୀ ମିତ୍ର ସଦୃଶ । ଏଣୁ ଭାରି ସହଜ ଲାଗେ । ପାଖରେ ଏହିପରି ଅଗ୍ରଜ ଥିଲେ ପାଦ ସ୍ୱତଃ ଆଗକୁ ବଢ଼େ ନିର୍ଭୟରେ, ନିଃସଙ୍କୋଚରେ ।

ଗୋଟିଏ ଶିବିରର କଥା । କଳାହାଣ୍ଡି ଜିଲ୍ଲାର ବନ୍ଧପଦା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଶ୍ରମଶିବିର (ପ୍ରଥମ) ଚାଲିଥାଏ । ପଢ଼ାହେଉଥାଏ 'ଗୀତା ନିବନ୍ଧମାଳା' । ମୁଁ ପଛଆଡ଼କୁ ବସିଥାଏ । ମୋ ପାଖରେ ବସିଥାଆନ୍ତି କଟକର ରବିଦାସ । କଅଣ ପଢ଼ାଚାଲିଥିଲା ଏବେ ଆଉ ମନେ ପଡୁନି । ତେବେ ଏତିକି ମନେ ଅଛି ଯେ ଆଦିବାସୀଙ୍କ ଦିନଚର୍ଯ୍ୟା କଥା ପଡ଼ିଥିଲା । ଚିଉଭାଇ କୋଉ ଭିତରୁ ଆମକୁ ଉଖାରୁ ଥିଲେ କେଜାଣି ମତେ ସେ ସବୁ ଶୁଣି କାନ୍ଦ ମାଡ଼ିଲା । ଆଦିମ ଅଧିବାସୀମାନଙ୍କର ନିର୍ଯ୍ୟାତନା କଥା କହୁଥିଲେ । ସଭ୍ୟମଣିଷ କିପରି ସେମାନଙ୍କୁ ଶୋଷଣ କରିଆସିଛନ୍ତି ସେଇ କଥା ଆଲୋଚନା ହେଉଥିଲା । ମୁଁ ସେଇ ସଭ୍ୟମଣିଷଙ୍କ ଭିତରୁ ଜଣେ । ଏଣୁ ପ୍ରକାରାନ୍ତରେ ମୁଁ ମଧ ଏଥିପାଇଁ ଦାୟୀ, ଏଇଆ ଭାବିଲି । ମଣିଷକୁ ଅସ୍ୱୀକାର କରୁଥିବା ମଣିଷପୁଙ୍ଗବ ଭଗବାନଙ୍କ ସମୀପବର୍ତ୍ତୀ ହୋଇପାରିବ ନାହିଁ ଏଇଆ ମନେ କରି ମତେ ଦୋଷୀ ଦୋଷୀ ଲାଗିଲା । ଏକଥା ରବିଭାଇ ଜରିଆରେ ତାଙ୍କ କାନକୁ କେତେବେଳେ ଚାଲିଗଲାଣି ଇସାରାରେ, ମୁଁ ଜାଣିନଥିଲି । ଅପରାହ୍ନର ସେଇ ଅଧିବେଶନ ୪ଟାରେ ସରିଲା । ତା'ପରେ ଦେଢ଼ ଘଣ୍ଟା କାମ । ପାଖ ପାହାଡ଼ ତଳୁ ଛୋଟ ଛୋଟ ପଥର ଗୋଟାଇ ଟ୍ରାକ୍ଟରରେ ଲଦିବା ଥିଲା ଆମର କାମ । ବୋଧହୁଏ ଦୁଇଟି ଟ୍ରାକ୍ଟରରେ ଦୁଇଦଳରେ ଶିବିରାର୍ଥୀମାନେ ଗଲେ । ଆଉ କେହି କେହି ସେଠାରେ ଥିବା ଅନ୍ୟ କାମ କଲେ । ମାତ୍ର ଆମେ ଦୁହେଁ ଯାଇ ପାରିଲୁ ନାହିଁ ।

ପାଖାପାଖି ହୋଇ କଥାବାର୍ତ୍ତା ହେଲୁ । ବୋଧହୁଏ ମୋ ପାଇଁ ସିଏ ଅଟକି ଗଲେ । ଏପରି ବ୍ୟତିକ୍ରମ ଆଉ କୋଉ ଶିବିରରେ ଦେଖିନାହିଁ ।

ଭୟ ଅଗ୍ରଗତିର ପ୍ରତିବନ୍ଧକ । ଆମ ଭିତରୁ ସେଇଟି ଦୂରେଇ ଦେବାରେ ଚିତ୍ତଭାଇ ଖୁବ୍ ତତ୍ପର । ମନର ଭୟ, ପ୍ରାଣର ଭୟ, ଶରୀରର ଭୟ, ଅବଚେତନରେ ବସା ବାନ୍ଧିଥିବା ଭୟ, ଆଗକୁ ଦେଖିବାର ଭୟ, ଇନ୍ଦ୍ରିୟଗତ ଭ୍ରାନ୍ତି ଇତ୍ୟାଦି ଆମକୁ ବାଟରେ ଧକ୍କା ଦିଏ, ଆଗକୁ ପାଦ ଯାଏ ନାହିଁ । ଥରକର କଥା । ବନ୍ଧପଡ଼ା ଶ୍ରମ ଶିବିର । ପୁରୁଣା ଇଟା ଗଦାରୁ ଇଟା ବାହାର କରାହେଉଥାଏ ସ୍କୁଲ ପାଚେରୀ କାମ ପାଇଁ । ଆମେ ସବୁ ଧାଡ଼ିରେ ଠିଆ ହୋଇଥାଉ । ଇଟା ହାତରୁ ହାତକୁ ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚେ । ଗଦାପାଖରେ ସିଏ ଥାଆନ୍ତି । ଆମ ଭିତରେ ବେଳେ ବେଳେ କେହି କେହି କାମ ଚାଲିଥିବା ବେଳେ ପକେଟ୍‌ରେ ମିକ୍ସଚର, ବିସ୍କୁଟ ଆଦି ଆଣିଥାଆନ୍ତି ଏବଂ ବାଣ୍ଟନ୍ତି । ଭୋରୁ ଭୋରୁ ଭୋକ ହେଉଥାଏ । ଏଣୁ ଅଳ୍ପ ଟିକିଏ ମଧ୍ୟ ଅମୃତ ପରିଲାଗେ । ହଠାତ୍ ମୋ ପ୍ୟାଣ୍ଟ ପକେଟ୍‌ରେ 'ବାବା' ଓରଫ୍ ସୁରେନ୍ଦ୍ରନାଥ ସାହୁ କିଛି ଆଣି ରଖିଲେ । ସୁରେନ୍ଦ୍ର ଭାଇ ଅଧ୍ୟାପକ । ବଡ ମଉଜିଆ ଲୋକ । ଅଭୀପ୍‌ସୁ ଜଣେ । ଚୁପ୍ କରି ସେତକ ରଖିଦେଇ ସେ କାମରେ ଲାଗିଲେ । ମତେ ତ ଭୋକ ହେଉଥାଏ । ଧୀରେ ଧୀରେ ପକେଟ୍‌ରେ ହାତ ଭର୍ତ୍ତିକରି ଅମୂଲ୍ୟ ସମ୍ପଦ ହସ୍ତଗତ କରିବାକୁ ଯାଉଛି ଏକ ନିରୀହ କୋମଳତାର ସ୍ପର୍ଶରେ ମୁଁ ଶିହରୀ ଉଠିଲି । ଇଏ କ'ଣ ? ବିସ୍କୁଟ କ'ଣ ଏତେ ନରମ ! ବିସ୍କୁଟର କି ଏଇ ରୂପ ! ଚୁଁ ଚୁଁ ଶବ୍ଦ ହେଉଥାଏ । ବୁଝିବାପାଇଁ ଆଉ ବାକି ରହିଲା ନାହିଁ । 'ବାବା' କିଛି ନ ଜାଣିଲାପରି କାମରେ ଲାଗିଥାଆନ୍ତି । ହାତମୁଠା ଖାଲି କରି ମୁଁ ମଧ୍ୟ କାମରେ ମନ ଦେଲି । କହିବା ବାହୁଲ୍ୟ ପକେଟରେ ଥିବା ସେଇ ଅଦ୍ଭୁତ ଚିଜ ଥିଲା ଦୁଇଟି ଜୀବନ୍ତ ମୂଷିକ ଶାବକ । ଇଟା ଗଦାରୁ ସଦ୍ୟ ଆବିଷ୍କୃତ । ଦୂରରେ ଚିତ୍ତଭାଇ ମୁରୁକି ମୁରୁକି ହସୁଥାଆନ୍ତି । ଗୁଲୁଗୁଲିଆ ମୂଷାଛୁଆ ଜାଣିକରି ମୁଁ କେବେ ହାତରେ ଧରି ନ ଥାନ୍ତି । କେମିତି କେମିତି ଲାଗେ । ସେଦିନର ଏଇ ଘଟଣାରୁ ସ୍ନାୟୁଗତ ଶିହରଣ ଧରାପଡ଼ିଗଲା । କାମ ସରିଲା, ତା ପରେ ସେ ଦୁଇଟି ବାହାର କରି ଅନ୍ୟ ଜାଗାରେ ରଖିଦେଲି । ଆଉ ଥରେ । ବ୍ରହ୍ମପୁରରେ ୧୫/୨୦ ଜଣ ବସିଥାଉ । ବହିପଢ଼ା ହେଉଥାଏ । ଆମ ଭିତରେ କଟକର ଟିକିଅପା (ଡାକ୍ତର ବିଜୟିନୀ ମହାପାତ୍ର) ମଧ୍ୟ ଥାଆନ୍ତି । The

Life Divine ବୋଧହୁଏ ଆଲୋଚନାର ବିଷୟବସ୍ତୁ ଥାଏ । ସମସ୍ତେ ସେଥିରେ ବୁଡ଼ି ରହିଥାଉ । ହଠାତ୍ ଝିଟିପିଟିଟାଏ ଟିକିଅପାଙ୍କ ଉପରେ ଲଥ୍ କିନା ପଡ଼ିଲା । ଦେଖିବ ଅପାଙ୍କୁ ! ସେଇ ଜନ୍ତୁଟା ସେ ସ୍ଥାନ ଛାଡ଼ି ଯିବା ପର୍ଯ୍ୟନ୍ତ ଅପାଙ୍କ ସମେତ ଉଣା ଅଧିକେ ସମସ୍ତେ ଚହଲି ଗଲେ । ସିଏ କିନ୍ତୁ ହଲିଲେ ନାହିଁ । ଥଟ୍ଟାରେ ଏଇ ଭୟ ଦୂର କରିବାପାଇଁ କ'ଣ କହିଲେ ଆଉ ମନେ ପଡୁନାହିଁ ।

(ପୁଣି କେବେ.......)

*ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର*
*ଅଧ୍ୟାପକ, ତର୍କ ଓ ଦର୍ଶନ ବିଭାଗ,*
*ସାମନ୍ତ ଚନ୍ଦ୍ରଶେଖର ଜନିଷ୍ଠ ମହାବିଦ୍ୟାଳୟ, ପୁରୀ-୭୫୨୦୦୧*

# ଏବେ ବି ମନେ ପଡ଼େ

**ଶ୍ରୀ**ଅରବିନ୍ଦଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଶ୍ରୀଅରବିନ୍ଦଙ୍କ ଲିଖିତ କେତେଗୁଡ଼ିଏ ପ୍ରମୁଖ ପୁସ୍ତକାବଳୀର ଅଧିକାଂଶ ଭାରତୀୟ ଭାଷାରେ ଅନୁବାଦ ହେବା ନିମନ୍ତେ ଭାରତ ସରକାରଙ୍କ ତରଫରୁ ଉଦ୍ୟମ ହେଉଥାଏ । ତାହା ୧୯୭୨ ମସିହାର କଥା । ପ୍ରଥମେ ପ୍ରଥମେ ବଙ୍ଗଳା, ହିନ୍ଦି, ଗୁଜୁରାଟୀ ପ୍ରଭୃତି ଭାଷାମାନଙ୍କରେ ଅନୁବାଦିତ ପୁସ୍ତକାବଳୀ ପ୍ରକାଶିତ ହୋଇଗଲା । ନବଜ୍ୟୋତି କାର୍ଯ୍ୟାଳୟ ତରଫରୁ ଓଡ଼ିଆରେ "ଶ୍ରୀଅରବିନ୍ଦ ସାହିତ୍ୟ ସଂଗ୍ରହ" ନାମରେ ଗୋଟିଏ ସେଟ୍ (୧୦ଖଣ୍ଡ ପୁସ୍ତକ) ପ୍ରକାଶ ହେବାପାଇଁ ସବୁଆଡ଼କୁ ଚିଠି ଚାଲିଗଲା । ସେହି ପୁସ୍ତକାବଳୀ ମଧ୍ୟରେ ଶ୍ରୀଅରବିନ୍ଦଙ୍କ ମୂଳ ବଙ୍ଗଳା ରଚନାବଳୀ, ଯୋଗସମନ୍ୱୟ, ଗୀତା ନିବନ୍ଧମାଳା, ଦିବ୍ୟଜୀବନ, ଭାରତୀୟ ସଂସ୍କୃତିର ଆଧାର, ମାନବ ଯୁଗଚକ୍ର ପ୍ରଭୃତି ଅନ୍ତର୍ଭୁକ୍ତ ଥିଲେ । ଅନ୍ୟାନ୍ୟ ଭାଷାମାନଙ୍କରେ ପ୍ରକାଶ ପାଇଯାଇଥିଲେ ମଧ୍ୟ ଓଡ଼ିଆରେ ଅନୁବାଦିତ ହୋଇ ପ୍ରକାଶିତ ହେବା ଏକ ମହାନ୍ ସମସ୍ୟା ଥିଲା ।

ସେ ବର୍ଷ ଗ୍ରୀଷ୍ମଛୁଟି ହୋଇଥାଏ । ପ୍ରପତ୍ତି କଟକ ଆସିଥାଆନ୍ତି । ମାମୁ ଓ ମୁଁ ସାଙ୍ଗହୋଇ ତାଙ୍କ ପାଖକୁ ଯାଇଥାଉ । ସେ ଆମ ଦୁହିଁଙ୍କୁ ଦେଖି ଅତ୍ୟନ୍ତ ଗଦ୍‌ଗଦ୍ ହୋଇ କହିଲେ– 'ଜାଣିଛ ଗଦାଧର, ଆମର ଏକ ବିରାଟ ସମସ୍ୟା

ଦୂର ହୋଇଗଲା । ଓଡ଼ିଆରେ ଶ୍ରୀଅରବିନ୍ଦଙ୍କ ପୁସ୍ତକ ସବୁ- ବିଶେଷ କରି "The Life Divine" କିପରି ଅନୁବାଦ ହେବ ସେଥିପାଇଁ ଆମର ବଡ଼ ଚିନ୍ତା ଥିଲା । ଏବେ ଆଗ୍ରାରୁ ଜଣେ ଓଡ଼ିଆ ଅଧ୍ୟାପକ କଟକ ଆସିଛନ୍ତି । ସେ ଅନୁବାଦ ସାହିତ୍ୟରେ ଧୁରନ୍ଧର । "The Life Divine" କୁ ଥରେ ମାତ୍ର ଧାଡ଼ିଟିଏ ପଢ଼ିଦେଇ ତାକୁ ଓଡ଼ିଆରେ ଲେଖୁଛନ୍ତି । ଦ୍ୱିତୀୟ ଥର ମୂଳପାଠକୁ ଦେଖିବା ମଧ୍ୟ ତାଙ୍କ ପାଇଁ ଆବଶ୍ୟକ ହେଉନାହିଁ । ଆମର ଗୋଟାଏ ବିରାଟ ସମସ୍ୟା ଦୂର ହୋଇଗଲା ।' ଆମେ ସେ ଅଧ୍ୟାପକଙ୍କ ପରିଚୟ ପାଇଁ ବ୍ୟଗ୍ର ହୋଇଉଠିଲୁ । ପ୍ରପତ୍ତି ପରିଚୟ ଦେଲେ- ନାମ ଶ୍ରୀ ଚିତ୍ତରଞ୍ଜନ ଦାସ, ତାଙ୍କ ପତ୍ନୀ ଡା.ଉଷା ଦାସ କଟକ ମେଡ଼ିକାଲରେ ପ୍ରସୂତି ବିଭାଗର ଡାକ୍ତର । ତାଙ୍କର ସରକାରୀ ବାସଭବନରେ ସେ ଅବସ୍ଥାନ କରୁଛନ୍ତି । ନିଶା ଖାଇବା ଲୋକ ନିଶା ଦ୍ରବ୍ୟର ସନ୍ଧାନ ପାଇଲେ ଯେମିତି ସେଠିକୁ ଛୁଟନ୍ତି- ଆମେ ଦୁଇଜଣ ସେମିତି ଆଉ କାଳ ବିଳମ୍ବ ନ କରି ସେ ବ୍ୟକ୍ତିଙ୍କ ସନ୍ଧାନରେ ସାଇକେଲ ମାରିଲୁ । ଉଷାଅପାଙ୍କ ଘର ପାଇବାରେ ଅସୁବିଧା ହେଲାନାହିଁ । ବାହାରୁ କବାଟ ବାଡ଼େଇବାରୁ ଜଣେ ବ୍ୟକ୍ତି ଆସି ଛିଡ଼ା ହେଲେ । ଖଦଡ଼ ଲୁଙ୍ଗି ଏବଂ ଖଦଡ଼ ଫତେଇ । ଅତ୍ୟନ୍ତ insignificant ଚେହେରା । ଆମେ ଦୁଇଜଣ ଯୁବକ ନିଶ୍ଚୟ କୌଣସି ଡାକ୍ତରୀ କାମରେ ଯାଇଥିବୁ ଭାବି କହିଉଠିଲେ– 'ଉଷା ନାହିଁ, ହସ୍‌ପିଟାଲ ଗଲାଣି ।' ଆମେ ଜାଣିନେଲୁ ଇଏ ନିଶ୍ଚୟ ସେଇ, ତଥାପି କହିଲୁ ଆମେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ପାଖକୁ ଆସିଥିଲୁ । ତୁରନ୍ତ ନିଜ ଆଡ଼ୁ ନମସ୍କାର କରି କହିଲେ, 'ଆଜ୍ଞା, ମୁଁ ନିଜେ । କ'ଣ କାମ ଥିଲା, କୁହନ୍ତୁ ।' ପ୍ରପତ୍ତିଙ୍କଠାରୁ ତାଙ୍କ ପରିଚୟ ଏବଂ ଶ୍ରୀଅରବିନ୍ଦଙ୍କ ପ୍ରତି ତାଙ୍କର ଅନୁରକ୍ତି ଶୁଣି ଆମେ ଦୁଇଜଣ ତାଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଥିଲୁ । ତେଣୁ ଏମିତି କବାଟ ପାଖରୁ ପଦେ ଦୁଇପଦ କଥା ହୋଇ ଚାଲିଆସିବାକୁ ଇଚ୍ଛା ନଥିଲା । ମାତ୍ର ସେ କଥା କହିବୁ କେମିତି ? ଆମେ ଧୀରେ ଧୀରେ ଘର ଭିତରେ ପାଦ ଥୋଇ କହିଲୁ, 'ପ୍ରପତ୍ତି ମହାଶୟଙ୍କଠାରୁ ଆପଣଙ୍କ ପରିଚୟ ପାଇ ଟିକେ ସାକ୍ଷାତ୍ କରିବାକୁ ଆସିଛୁ । ଆପଣଙ୍କ ସଙ୍ଗରେ ଦୁଇ ତିନି ମିନିଟ୍ କଥା ହୋଇଥାଆନ୍ତୁ ।' ଭିତର ଘରେ ଦୁଇ ଚାରିଟି ବେତବୁଣା ସୋଫା ପଡ଼ିଥାଏ । ଗୋଟିଏ ସାଧାରଣ ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକୀୟ ବସ୍ତୁର ମଧ୍ୟ ସେ ଘରେ ଊଣା ଅନୁଭବ ହେଉଥାଏ । ସାମାନ୍ୟ ଅପ୍ରସ୍ତୁତ ହୋଇ ସେ ସୋଫାରେ ବସିବାକୁ କହିଲେ ଏବଂ ନିଜେ ମଧ୍ୟ ବସିଲେ । ତାଙ୍କର ମନୋଭାବରୁ ସେ ଆମ

ସଙ୍ଗେ ବେଶୀ ସମୟ କଥା ହେବାକୁ ଚାହୁଁନଥିବା ଭଳି ମନେ ହେଲା । ମାତ୍ର ଆମେ ତ ନଛୋଡ଼ବନ୍ଧା । ବିଭିନ୍ନ ସୂତ୍ରରୁ ଆଲୋଚନା କରିବାକୁ ଉଦ୍ୟମ କରୁ କରୁ ସେ ତାକୁ ଗୋଟିଏ ଛୋଟିଆ ବାକ୍ୟରେ ସାରିଦେଇ ପୂର୍ଣ୍ଣଚ୍ଛେଦ ପକାଇ ଦେଉଥାନ୍ତି । ଆମେ ନିଉ ଲାଇଟ୍ ସୋସାଇଟି ସମ୍ପର୍କରେ କହିଲୁ । ଓଡ଼ିଶାରେ ବିଶେଷ କରି କଟକରେ ସାଙ୍ଗଠନିକ କାର୍ଯ୍ୟ ସମ୍ପର୍କରେ ମଧ୍ୟ ତାଙ୍କୁ ସୂଚନା ଦେଲୁ । ଅତ୍ୟନ୍ତ ଅନାଗ୍ରହ ସହିତ ସେ ଶୁଣୁଥାଆନ୍ତି । ମାମୁଁ ତାଙ୍କ ସହିତ କଥା ହେଉଥାଆନ୍ତି- ମୁଁ କେବଳ ଶୁଣୁଥାଏ ଏବଂ ତାଙ୍କୁ ଦେଖୁଥାଏ । ମୋତେ ଲାଗୁଥାଏ ଗୋଟାଏ କୌଣସି କାର୍ଯ୍ୟରେ ସେ ବ୍ୟସ୍ତ ଥିଲେ ଏବଂ ଆମଠାରୁ ମୁକ୍ତିପାଇ ସେ ତୁରନ୍ତ ସେ କାର୍ଯ୍ୟ କରିବାକୁ ଯିବାକୁ ଚାହୁଁଥାଆନ୍ତି ।

ଆମ ଆଲୋଚନା ମଧ୍ୟରେ ଆମେ ପ୍ରତ୍ୟେକ ମାସର ଶେଷ ରବିବାର ଦିନ କଟକର ବିଭିନ୍ନ ପାଠଚକ୍ରମାନଙ୍କରେ ଏକ ମିଳିତ ପାଠଚକ୍ରର ଆୟୋଜନ ହେବା ବିଷୟ କହି ପରବର୍ତ୍ତୀ ମାସ ଶେଷ ରବିବାର କିଶୋର ଟ୍ରାନ୍ସପୋର୍ଟଠାରେ ଶ୍ରୀଅରବିନ୍ଦଙ୍କ 'ମା' ପୁସ୍ତକ ସମ୍ପର୍କରେ ଆଲୋଚନା କରିବାକୁ ତାଙ୍କୁ ଅନୁରୋଧ କଲୁ । ଖୁବ୍ କଠୋର ଅଥଚ ନମ୍ର ଭାବରେ ସେ ଅସମ୍ମତ ହେଲେ । ମାତ୍ର ମାମୁଁ ବୋଧହୁଏ କିଛି Intuitionରୁ ଜାଣିପାରିଲେ- ସେ ଛାଡ଼ିଲେ ନାହିଁ । ଖୁବ୍ ଅଳ୍ପ ସମୟ ପାଇଁ ହେଉପଛେ ଆସିବେ ବୋଲି ଅନୁରୋଧ କରିବାରୁ ସେ ବାଧ୍ୟହୋଇ ଆମ ଦୁଇଜଣଙ୍କଠାରୁ ମୁକ୍ତି ପାଇବା ଲୋଭରେ ରାଜି ହୋଇଗଲେ ।

ପରବର୍ତ୍ତୀ ମାସ ଶେଷ ରବିବାର ଥିଲା ଏକ ଭିନ୍ନ ରବିବାର । ଅଧ୍ୟାପକ ଚିତ୍ତରଂଜନ ଦାସଙ୍କ ମାତୃକର୍ମରେ ସାଙ୍ଗଠନିକ ଦାୟିତ୍ୱ ଗ୍ରହଣର ପ୍ରଥମ ଦିନ ବା ଶୁଭାରମ୍ଭ । ଆମେ ସମଗ୍ର କଟକ ସହରରେ ଜଣାଇ ଦେଇଥାଉ । କିଶୋର ଟ୍ରାନ୍ସପୋର୍ଟରେ ଅପରାହ୍ନ ୪ଟା ୩୦ ମିନିଟ୍‌ରେ ଆଲୋଚନା ଆରମ୍ଭ ହେବ । ଚିତ୍ତଭାଇଙ୍କୁ ଦେଖିବାକୁ ସମସ୍ତେ ବ୍ୟଗ୍ର । ଠିକ୍ ପାଞ୍ଚମିନିଟ୍ ପୂର୍ବରୁ ଗୋଟିଏ ସାଇକେଲରେ ଖଦଡ଼ ଧୋତି, ଖଦଡ଼ ପଞ୍ଜାବି ଏବଂ କାନ୍ଧରେ ଗୋଟିଏ ଖଦଡ଼ କନା ବ୍ୟାଗ୍ ପକାଇ ପହଞ୍ଚିଲେ ଚିତ୍ତଭାଇ । ଆଲୋଚନା ଆରମ୍ଭ ହେଲା । ଶ୍ରୀମା ଶ୍ରୀଅରବିନ୍ଦଙ୍କ ସାହିତ୍ୟରେ ମାମୁଙ୍କର ପ୍ରବେଶ ଏବଂ ଏତେ ସୁନ୍ଦର ଏକ ସମଆଦର୍ଶ ଭାବାପନ୍ନ ଗୋଷ୍ଠୀକୁ ଦେଖି ଚିତ୍ତଭାଇ ଖୁବ୍ ଖୁସୀ ହୋଇଗଲେ । ସାଧାରଣତଃ ସଭା ସମିତି ପ୍ରଭୃତିକୁ ସେ ଇଚ୍ଛାକରି avoid

କରନ୍ତି, ତେଣୁ ଆମ ସଭାକୁ ଆସିବାକୁ ଏତେ ଅରାଜି ହେଉଥିଲେ ବୋଲି କହିଲେ ଏବଂ ସମସ୍ତଙ୍କର ଅନୁରୋଧ କ୍ରମେ ପ୍ରତ୍ୟେକ ମାସର ଶେଷ ରବିବାର ଦିନ ଆଲୋଚନା ସଭାରେ ଅଂଶ ଗ୍ରହଣ କରିବେ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଲେ ।

ବଢ଼ି ଚାଲିଲା ଚିତ୍ତଭାଇଙ୍କ ସହିତ ଆମ ସମ୍ପର୍କର ଗଭୀରତା । ସେତେବେଳେ ମାମୁ ସବୁଦିନ ଖଟ୍‌ବିନ୍ ସାହିରୁ ସାଇକେଲରେ ଯୋବ୍ରା ଯାଇ ସେଠାରୁ ଲଞ୍ଚରେ ଚୌଦ୍ୱାର କାଗଜ କଳ ଯାଉଥିଲେ । ପ୍ରାୟ ଅଧିକାଂଶ ଦିନ ଚିତ୍ତଭାଇ ପ୍ରାତଃ ଭ୍ରମଣ ସାରି ଫେରୁଥିବା ସମୟରେ ମାମୁଙ୍କ ସହିତ ସାକ୍ଷାତ ହୁଏ, ରାସ୍ତାରେ ଅନେକ ବିଷୟ ଆଲୋଚନା କରନ୍ତି । ଅତ୍ୟନ୍ତ କଠୋର ଭାବରେ ଶୃଙ୍ଖଳିତ ଏକ ଜୀବନଧାରା ସେ ବିତାନ୍ତି । କେବେହେଲେ ଗୋଟିଏ ମୁହୂର୍ତ୍ତ ମଧ୍ୟ ନଷ୍ଟ କରନ୍ତି ନାହିଁ । ଯେଉଁ ସ୍ଥାନରେ ପହଞ୍ଚିବା କଥା ସେଠାରେ ନିଶ୍ଚୟ ନିର୍ଦ୍ଧାରିତ ସମୟର ପୂର୍ବରୁ ପହଞ୍ଚନ୍ତି । କୌଣସି ପ୍ରକାରର ତଥାକଥିତ ମର୍ଯ୍ୟାଦା ପାଇଁ ଅପେକ୍ଷା ରଖନ୍ତି ନାହିଁ । ତାଙ୍କ ଭଳି ଯେ ଅନ୍ୟମାନେ ନିଶ୍ଚୟ ହୋଇନଥିବେ ଏକଥା ମଧ୍ୟ ସେ ହୃଦୟଙ୍ଗମ କରନ୍ତି । ସମସ୍ତଙ୍କ ସହିତ ଖୁବ୍ ଭଲଭାବରେ ଏବଂ ଶୀଘ୍ର ମିଶିପାରୁଥିବା ଅଥଚ ସମ୍ପୂର୍ଣ୍ଣ ଏକାକୀ ମଣିଷଟିଏ ।

ଚିତ୍ତଭାଇଙ୍କର ମାସକୁ ଥରେ କ୍ଲାସ ଧୀରେ ଧୀରେ ପ୍ରତ୍ୟେକ ରବିବାରକୁ ମାଡ଼ିଗଲା । ସେ ନିଜେ ଅନୁପ୍ରାଣିତ ହେଲେ । ଭବିଷ୍ୟତରେ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଧାରାରେ ଅଂଶ ଗ୍ରହଣ କରିବାକୁ ଯାଉଛନ୍ତି ଏକଥା ମଧ୍ୟ ସେ ହୃଦୟଙ୍ଗମ କଲେ । ଅନୁବାଦ କାର୍ଯ୍ୟକ୍ରମ ବଢ଼ିଚାଲିଲା । ପ୍ରପତ୍ତି ପ୍ରତ୍ୟେକ ମାସରେ ଥରେ ନିଶ୍ଚୟ ଓଡ଼ିଶା ଆସୁଥିଲେ । ସେତିକିବେଳେ ଚିତ୍ତଭାଇଙ୍କ ସହିତ ତାଙ୍କର ସାକ୍ଷାତ ହେଉଥିଲା । ଅଧିକାଂଶ ସମୟ ଆଲୋଚନାରେ ଆମ୍ଭେମାନେ ମଧ୍ୟ ଅଂଶ ଗ୍ରହଣ କରୁଥିଲୁ । ପ୍ରପତ୍ତିଙ୍କ ସହିତ ମଧ୍ୟ ଓଡ଼ିଶାରେ ବିଭିନ୍ନ ସଭା ସମିତିରେ ସେ ଯୋଗ ଦେବାକୁ ଆରମ୍ଭ କଲେ ।

ସେତେବେଳେ କଟକ ସହରର ଖଟ୍‌ବିନ୍ ସାହିରେ ପ୍ରତ୍ୟେକ ରବିବାର ଦିନ ନିଉଲାଇଟ୍ ସୋସାଇଟିରେ ସାପ୍ତାହିକ ପାଠଚକ୍ର ହେଉଥାଏ । ଚିତ୍ତଭାଇ ସେ କ୍ଲାସ୍‌ରେ ଯୋଗଦେଲେ । ଚିତ୍ତଭାଇଙ୍କର ଆଲୋଚନାରେ ଅଂଶଗ୍ରହଣ ଯୋଗୁଁ ଧୀରେ ଧୀରେ ଶ୍ରୋତାଙ୍କର ସଂଖ୍ୟା ମଧ୍ୟ ବଢ଼ିଲା । ଚିତ୍ତଭାଇ 'ମା' ବହି ପରେ 'ଦିବ୍ୟ ଜୀବନ' ଆଲୋଚନା ଆରମ୍ଭ କଲେ । ସେ ବହି ଅନୁବାଦ ଚାଲୁଥାଏ– ଆଲୋଚନା ମଧ୍ୟ ଚାଲୁଥାଏ । ଏକ ଭିନ୍ନ ସ୍ୱଭାବର ମଣିଷ ସେ । ସାଧାରଣ

ବ୍ୟକ୍ତିଭାବରେ ଜଣେ ଯାହା ଯାହା ଖୋଜିବାର କଥା ସେ ସବୁ କେବେହେଲେ ଖୋଜନ୍ତି ନାହିଁ । ଥରେ ଖଟ୍‌ବିନ୍ ସାହି ପାଠଚକ୍ର ପରେ ସ୍ୱର୍ଗତ ରତ୍ନାକର ମହାନ୍ତିଙ୍କ ଝିଅ ବାହାଘରକୁ ଆମେ ବାହାରିଲୁ । ଚିତ୍ତଭାଇଙ୍କୁ ସେ ଚିହ୍ନି ନଥାନ୍ତି କିମ୍ବା ନିମନ୍ତ୍ରଣ ମଧ କରିନଥାନ୍ତି । ଆମେ ତାଙ୍କୁ ପଚାରୁ ପଚାରୁ ସେ ରାଜି ହୋଇଗଲେ । ଯଦି ବେଶୀ ବିଳମ୍ବ ନ ହୁଏ ଯିବାରେ ଅସୁବିଧା ନାହିଁ ବୋଲି କହିଲେ ଏବଂ ଆମ ସଙ୍ଗରେ ଯାଇ ଭୋଜି ଖାଇଦେଇ ଆସିଲେ । ଏଭଳି ଏକ ସରଳ ତଥା ସ୍ନେହୀ ବ୍ୟକ୍ତିତ୍ୱ ଆମ ଜୀବନରେ ବିରଳ ।

ଭୁବନେଶ୍ୱର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରଠାରେ ଆବଶ୍ୟକ ପଡ଼ିବାରୁ ପ୍ରପତ୍ତିଙ୍କ ଅନୁରୋଧରେ ସେ ସେଠାରେ କିଛିଦିନ ଦାୟିତ୍ୱରେ ଥିଲେ । ସେତେବେଳେ ସରକାରଙ୍କ ପାଇଁ ଆବଶ୍ୟକ ଯାବତୀୟ ଶିକ୍ଷାସମ୍ପର୍କୀୟ ପତ୍ର, ପ୍ରବନ୍ଧ ଇତ୍ୟାଦି ପ୍ରପତ୍ତିଙ୍କ ଅନୁରୋଧ କ୍ରମେ ସେ ଅକ୍ଳେଶରେ ଲେଖି ଦେଉଥିଲେ । ଲେଖିବାରେ ଏବଂ ଭାଷା ସଂଯୋଜନାରେ ତାଙ୍କର ଅସାଧାରଣ ସାମର୍ଥ୍ୟ । ଥରେ ଆମ ଜନଗଣନା ଅଫିସର ଏକ ଆଞ୍ଚଳିକ ସମ୍ମିଳନୀ ପୁରୀଠାରେ ଅନୁଷ୍ଠିତ ହେଉଥାଏ । ଆମର ସହକାରୀ ନିର୍ଦ୍ଦେଶକଙ୍କୁ ସେହି ସମ୍ମିଳନୀରେ ଏକ ସ୍ୱାଗତ ଭାଷଣ ପାଠ କରିବାକୁ ଦାୟିତ୍ୱ ଦିଆଯାଇଥାଏ । ସେ ମହାଶୟ ମୋତେ ଉକ୍ତ ଭାଷଣଟି ଲେଖିଦେବାପାଇଁ ଅନୁରୋଧ କଲେ । ସେଠାରେ ପୂର୍ବାଞ୍ଚଳର ପ୍ରତ୍ୟେକ ରାଜ୍ୟର ପ୍ରତିନିଧିମାନେ ଯୋଗ ଦେଉଥାଆନ୍ତି । ତେଣୁ ସ୍ୱାଗତ ଭାଷଣଟି ଅନୁରୂପ ହେବା ଆବଶ୍ୟକ ବୋଲି ସେ ଅନୁରୋଧ କଲେ । ମୁଁ କାଳବିଳମ୍ବ ନ କରି ଚିତ୍ତଭାଇଙ୍କ ପାଖକୁ ଚାଲିଲି । ଭୁବନେଶ୍ୱରର ତାଙ୍କ ରୁମ୍‌ରେ ସେ କିଛି ଲେଖୁଥାଆନ୍ତି । ମୋତେ ଦେଖି କ'ଣ କାମ ଅଛି ପଚାରିଲେ । ମୁଁ ତୁରନ୍ତ ସ୍ୱାଗତ ଭାଷଣ କଥା କହିଲି । ସେ ଯେଉଁ ବିଷୟ ଲେଖୁଥିଲେ ତାକୁ ଠିକ୍ ସେହିଠାରେ ବନ୍ଦ କରି ଆଉ ଗୋଟିଏ କାଗଜ କାଢ଼ି ସେଥିରେ ମୋ ପାଇଁ ସ୍ୱାଗତ ଭାଷଣଟି ଲେଖିଦେଲେ । ମଝିରେ ମଝିରେ କିଛି ଜନଗଣନାର ତଥ୍ୟ ପଚାରୁଥାଆନ୍ତି । ମୁଁ କହି ନ ପାରିଲେ ଜାଗା ଛାଡ଼ି ଦେଉଥାଆନ୍ତି – ପରେ ପୂରଣ କରିବା ପାଇଁ । ଠିକ୍ ଦଶ ମିନିଟ୍ ମଧରେ ପ୍ରାୟ ଦୁଇ ପୃଷ୍ଠାର ଅତ୍ୟନ୍ତ ମାର୍ଜିତ ଇଂରାଜୀରେ ଜନଗଣନାର ରାଜ୍ୟ ଅଧିକାରୀମାନଙ୍କୁ ସମ୍ବୋଧନ କରି ଗୋଟିଏ ସ୍ୱାଗତ ଭାଷଣ ଲେଖିଦେଲେ । ଉପନିର୍ଦ୍ଦେଶକ ମହୋଦୟ ଭାଷଣଟି ପଢ଼ି ଚିତ୍ତଭାଇଙ୍କର ପରିଚୟ ପାଇଲା ପରେ– ଜନଗଣନା ଇତିହାସରେ ଏପରି ଜଣେ ଅଜନଗଣନା ବ୍ୟକ୍ତି

ଜନଗଣନାର ବ୍ୟାବହାରିକ ଦିଗକୁ ଭିତ୍ତି କରି ଏଭଳି ଗୋଟିଏ ରିପୋର୍ଟ ଲେଖିବା ସମ୍ଭବ ହୋଇନାହିଁ ବୋଲି କହିଥିଲେ ।

ମୋର ଜନ୍ମଦିନ ଡିସେମ୍ବର ୩୧ ତାରିଖ । ଥରେ ଖଟ୍‌ବିନ୍‌ସାହି ପାଠଚକ୍ରରୁ ସମସ୍ତଙ୍କୁ ଆମଘରେ ଖାଇବାପାଇଁ ବୋଉ ଡାକିଥାଏ । ସେ ଦିନ ପାଠଚକ୍ର ସରିବାପରେ ସମସ୍ତେ ଆମଘରକୁ ଗଲେ । ଆମ ଘରେ ମୋ ନନା (ନିଶାମଣି ତ୍ରିପାଠୀ)ଙ୍କୁ ଦେଖୁ ଦେଖୁ ଚିତ୍ତଭାଇ ଅତ୍ୟନ୍ତ ଖୁସି ହୋଇଗଲେ । ମୋତେ କହିଲେ ପ୍ରସାଦ ବାବୁ, ଆପଣ ଆମର ଏତେ ଆତ୍ମୀୟ ଏକଥା ଆଜିଯାଏ କହିନାହାନ୍ତି । ମୋ ନନା ରାମକୃଷ୍ଣ କଲେଜର ଡେପୁଟି ସୁପରିଟେଣ୍ଡେଣ୍ଟ ଥିବାବେଳେ ଚିତ୍ତଭାଇ ସେଠାରେ ରହି ପାଠ ପଢୁଥିଲେ । ପରେ ତାଙ୍କର ବଡ଼ଭାଇ ଶ୍ରୀ କାହ୍ନୁ ଚରଣ ଦାସଙ୍କର ଝୋଲାସାହି ଘରେ ଭଡ଼ା ନେଇ ନନା ଥିବାବେଳେ ମୁଁ ସେହିଠାରେ ଜନ୍ମ ହୋଇଥିଲି । ସେ ଦୃଷ୍ଟିରୁ ତାଙ୍କ ସହିତ ମୋର ଆତ୍ମୀୟତା ସ୍ୱତନ୍ତ୍ର ବୋଲି ସେ ମତ ଦେଇଥିଲେ ।

ଅଳ୍ପ ଦିନ ତଳେ ଡଃ ସୁଧାକର ଆଚାର୍ଯ୍ୟଙ୍କର ଦ୍ୱାଦଶାହକୁ ସେ ଏବଂ ଉଷାଅପା ଭୁବନେଶ୍ୱରରୁ କଟକ ମାତୃଭବନକୁ ଆସିଥାଆନ୍ତି । ସେଠାରେ ଯୋଗଦେଇ ଭାଷଣ ଦେବାପାଇଁ ନୁହେଁ— କେବଳ ସୁଧାକର ଆଚାର୍ଯ୍ୟଙ୍କ ସହିତ ସମ୍ପର୍କର ସ୍ମୃତିକୁ ସ୍ମରଣ କରି ତାଙ୍କ ପ୍ରତି ନିଜର ଶ୍ରଦ୍ଧା ନିବେଦନ କରିବାକୁ । ଯେତେ ଅନୁରୋଧ କଲେ ମଧ ପଦେ ବି କହିବାକୁ ଆସିଲେ ନାହିଁ । ଏକ ବିଶାଳ ଜ୍ଞାନର ଭଣ୍ଡାରରେ ଅଭିଷିକ୍ତ ଆଉ ସେଥିପାଇଁ ଆଦୌ ସ୍ୱୀକୃତି ଖୋଜୁନଥିବା ସମାଜର ଖୁବ୍ ଅଳ୍ପ କେତେଜଣ ଅତ୍ୟନ୍ତ ଉଚ୍ଚକୋଟୀର ମଣିଷଙ୍କ ମଧ୍ୟରେ ଚିତ୍ତଭାଇ ଅନ୍ୟତମ । ଅଶୀତି ପର ବର୍ଷରେ ମଧ ସେ ତାଙ୍କର ନିଜସ୍ୱ ସାଧନାରେ ଏବେ ବି ନିମଗ୍ନ । ଏଭଳି ଏକ ବ୍ୟକ୍ତିଙ୍କର ଅତ୍ୟନ୍ତ ନିକଟ ସମ୍ପର୍କରେ ଆସିଥିବାରୁ ଆମ୍ଭେମାନେ କୃତାର୍ଥ ।

*ପ୍ରସାଦ ତ୍ରିପାଠୀ (ବାବୁଲି ଭାଇ)*
*ମାତୃଭବନ, କଟକ*
*(ସୌଜନ୍ୟ : 'ମାତୃଭବନ ପତ୍ର')*

# ଚମ୍ପତିମୁଣ୍ଡା ସ୍ମରଣରେ

ଚିଉଭାଇଙ୍କ ଭଳି ବିରାଟ ବ୍ୟକ୍ତିଙ୍କ ବିଷୟରେ ଯେତେ ଲେଖିଲେ ବି ତାହା ଅଯଥେଷ୍ଟ ହେବ, ଛୋଟ ହୋଇଯିବ । ସିଏ ପାଣିରେ ଭାସୁଥିବା ବରଫ ଖଣ୍ଡଭଳି । ଯେତିକି ଉପରକୁ ତା'ଠୁଁ ଅଧିକ ପାଣି ଭିତରେ । ସାମଗ୍ରିକ ଭାବେ ତାଙ୍କୁ କଳ୍ପନା କରିବା ମୋ ପକ୍ଷେ ଅସମ୍ଭବ । ଆଉ ବଡ଼କଥା ଭାଷା । ମୋ ପାଖରେ ଆବଶ୍ୟକ ଭାଷା ନାହିଁ । ଚାରିବର୍ଷ ତାଙ୍କ ସହିତ କଟାଇଛି । ବର୍ଷେ ଆଂଶିକ ଭାବରେ ଏବଂ ତିନିବର୍ଷ ସଂପୂର୍ଣ୍ଣ ଭାବରେ ଛାତ୍ର ହୋଇ । ତା ଭିତରେ ତାଙ୍କୁ ଯେତିକି ଜାଣିଛି, କେତୋଟି ଘଟଣା ଯାହାକି ମୋତେ ବିସ୍ମିତ କରିଛି ଲେଖିବି ।

ଚିଉଭାଇ କାହାକୁ ତୁଚ୍ଛ ଜ୍ଞାନ କରନ୍ତି ନାହିଁ । ତା ସହିତ କାହାକୁ ଅଧିକ କ୍ଷମତାଶାଳୀ ବା ଉଚ୍ଚପଦସ୍ଥ ବୋଲି ଅଯଥା ଗୁରୁତ୍ୱ ଦିଅନ୍ତି ନାହିଁ । ଆମ ସ୍କୁଲର ହଳିଆ ଦୁତିଆ ଭାଇକୁ ନମସ୍କାର କରନ୍ତି । ତାର ଦୁଃଖ ସୁଖ କଥାବାର୍ତ୍ତା କରି ବୁଝନ୍ତି । ଏହିଭଳି ଚମ୍ପତିମୁଣ୍ଡା ଗାଆଁର ନିତିଆ ଭାଇ ଭଳି ସାଧାରଣ ଲୋକକୁ ପରିଚୟ ଥିଲେ ନମସ୍କାର କରି ସମ୍ମାନ ଜଣାନ୍ତି । ଦିନକର କଥା । ଅନୁଗୁଳରୁ ଏସ୍.ଡ଼ି.ଓ. ଆସିଥାନ୍ତି ତଦନ୍ତ କାମରେ । ଜଣେ ଭାଇ ଚିଉଭାଇଙ୍କୁ ଡାକିବାକୁ ଗଲେ– ଏସ୍.ଡ଼ି.ଓ ଆସିଛନ୍ତି ଚାଲନ୍ତୁ ବୋଲି । ଚିଉଭାଇଙ୍କ ଉତ୍ତର, "ମୁଁ ସେଠାରେ କ'ଣ କରିବି । କିରାଣୀ ବାବୁ ଅଛନ୍ତି । ସେ ତାଙ୍କ କାମ କରିବେ । ଖାତାପତ୍ର ଦେଖେଇବେ ।" ସମାଜ ସାଧାରଣତଃ ମଳିମୁଣ୍ଡିଆକୁ ହେୟଜ୍ଞାନ କରି ଅଫିସରଙ୍କୁ ଅଯଥା ସମ୍ମାନ ଦିଏ । ଅଫିସରଙ୍କୁ ନମସ୍କାର ଭୟ ବା ତୋଷାମଦ ହୋଇପାରେ । ଅଫିସରଙ୍କ ଯୋଗ୍ୟତା ଅଧିକ । ତେଣୁ ତାଙ୍କୁ ଅଧିକା ଦରମା ମିଳେ । ଆମ ସ୍କୁଲରେ ସକାଳ ୯.୩୦ରୁ ୧୧.୩୦ ଏବଂ ଉପରଓଳି ୨.୦୦ରୁ ୪.୦୦ ପର୍ଯ୍ୟନ୍ତ କ୍ଲାସ ହୁଏ । କ୍ଲାସ୍‌ପରେ ପିଲାମାନେ ନିଜ ଇଚ୍ଛାରେ ଲାଇବ୍ରେରୀ ବ୍ୟବହାର କରନ୍ତି । ବହି ଧରି କିଏ ଜଙ୍ଗଲ ଆଡ଼କୁ ଚାଲିଯାଏ ତ କିଏ ବଡ଼ ପଥର ଉପରକୁ ଉଠିଯାଇ ପୁସ୍ତକ ପଢ଼ିବାରେ ମନ ଦିଏ । ପ୍ରଥମ ବ୍ୟାଚ୍‌ର ପିଲା

ବୈଦ୍ୟନାଥଭାଇ ଏବଂ ଗୋପୀନାଥଭାଇଙ୍କ ମଧ୍ୟରେ ଭଲ ଦୋସ୍ତି ଥାଏ । ପରସ୍ପରକୁ ବଡ଼ କୌତୁକପୂର୍ଣ୍ଣ ବ୍ୟବହାରରେ ଆପ୍ୟାୟିତ କରନ୍ତି । ଦିନେ ଚିଉଭାଇ ଉପରଓଳି କ୍ଲାସ୍ ପରେ ଗୋଟିଏ ପଥର ଉପରେ ବସି ବହି ପଢୁଥାନ୍ତି । ମୁଣ୍ଡରେ ତଉଲିଆକୁ ପକାଇ ମୁହଁକୁ ଢ଼ାଙ୍କି ଦେଇଥାନ୍ତି । ପଛପଟୁ ଗୋପୀନାଥ ଭାଇ ଜାଣି ପାରିଲେ ନାହିଁ । ଭାବିଲେ ବୈଦ୍ୟନାଥ ମୁଣ୍ଡରେ ଓଢ଼ଣାଦେଇ ପଢୁଛି । "କିରେ ବଇଦା ! କ'ଣ ପଢୁଛ କି ରେ ?" ବୋଲି କହି ଚିଉଭାଇଙ୍କ ପିଠିରେ ଦୁଲକରି ଗୋଟିଏ ବିଧା କଷି ଦେଇ କୌଣସି ପ୍ରତିକ୍ରିୟା ନ ହେବାରୁ ଓଢ଼ଣାକୁ କାଢ଼ିଦେଇ ଯେତେବେଳେ ଜାଣିଲେ ବଇଦା ନୁହେଁ ଚିଉଭାଇ ପଢୁଛନ୍ତି- ଅତର୍କ୍ଷାରେ ଦୌଡ଼ିକରି ଛାତ୍ରାବାସକୁ ପଳାଇଲେ । ପରଦିନ ଗୋପୀନାଥଭାଇର ମନରୁ ଭୟ ଦୂର କରିବା ପାଇଁ ଚିଉଭାଇ ତାକୁ କହିଲେ, "କିଓ ଗୋପୀନାଥ ! ବଇଦା କିଛି କହିଲେ ନାହିଁ ?" ଏତିକି କହି ହସିଦେଲେ । ଗୋପୀନାଥ ଭାଇର ପିଣ୍ଡରେ ପ୍ରାଣ ରହିଲା- ସେ ଅଭୟ ପାଇଗଲା । ଚିଉଭାଇ ଶିକ୍ଷକ ଓ ଛାତ୍ର ଭିତରେ ବ୍ୟବଧାନ ରଖନ୍ତି ନାହିଁ । ପାଠ ପଢ଼ାଇବା ବେଳେ ଶ୍ରେଣୀକୁ ଏକକ ଭାବରେ ନ ଦେଖି ଛାତ୍ରକୁ ଏକକ ଭାବରେ ଦେଖୁଥିଲେ । ସେଥିପାଇଁ ବ୍ୟକ୍ତିଗତ ଭାବରେ ଛାତ୍ର ସହିତ ସଂପର୍କ ରଖିଥିଲେ । ମନୋବିଜ୍ଞାନରେ ତାଙ୍କର ଜ୍ଞାନ ଥିବାରୁ ଅନ୍ତଃପ୍ରବେଶ ତାଙ୍କ ପାଇଁ ସହଜ ଥିଲା ଏବଂ ତାଙ୍କ ବ୍ୟବହାର ଆମକୁ ଆପଣାର କରି ପାରୁଥିଲା । ତାଙ୍କର କ୍ଲାସ ଚାଲୁଥିଲା ବେଳେ ସେ ସମସ୍ତଙ୍କୁ ଏକ ସଙ୍ଗେ ନେଇ ଚାଲୁଥିଲେ । କ୍ଲାସ ମଝିରେ କିଏ ଜଣେ ଅନ୍ୟମନସ୍କ ହୋଇ ପଡ଼ିଲେ ଜାଣିବା ମାତ୍ରେ ହଠାତ୍ ଲେକ୍‌ଚର ବନ୍ଦ କରି ଦେଉଥିଲେ ଏବଂ ଅନ୍ୟମନସ୍କ ଥିବା ପିଲା ଆଡ଼କୁ ଅନାଇ ରହୁଥିଲେ ମୁରୁକି ହସ ସହିତ । ଲେକ୍‌ଚର ବନ୍ଦ ହୋଇଯିବାର ଜାଣି ଚିଉଭାଇଙ୍କ ଚାହିଁବା ଆଡ଼କୁ ଅନ୍ୟସମସ୍ତ ପିଲାଙ୍କ ଦୃଷ୍ଟି ମଧ୍ୟ ପଡ଼ିଯାଉଥିଲା । ଏଥିରେ ପିଲାଟି ଲଜ୍ଜିତ ହେଉଥିଲା ଓ ତା'ର ପରିବର୍ତ୍ତନ ଘଟୁଥିଲା । ଅଧିକ ପିଲା ଅନ୍ୟମନସ୍କ ହୋଇ ପଡ଼ିଛନ୍ତି ଜାଣିଲେ ମୂଳ ପ୍ରସଙ୍ଗକୁ ସେଇଠି ରଖି ପିଲାଙ୍କ ମନ ଖୁସି କରିବା ପାଇଁ ଏକ କୌତୁହଳ ପ୍ରସଙ୍ଗ ଆଣି ଉପସ୍ଥାପନ କରୁଥିଲେ । ଆମେ ସମସ୍ତେ ହସିବା ପରେ ପୁଣି ମୂଳ ବିଷୟ ଉପରକୁ ଯିବା ବୋଲି କହିବାପରେ ଲେକ୍‌ଚର ଦେଉଥିଲେ ।

କାହାରିପ୍ରତି ବିଦ୍ୱେଷ ଭାବ ଚିଉଭାଇଙ୍କ ପାଖରେ ନାହିଁ । ଯେତେବେଳେ ସେ ଚମ୍ପତିମୁଣ୍ଡା ସ୍କୁଲ ଛାଡ଼ିଲେ ଆମେ ସମସ୍ତେ ଭାବିଲୁ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ନୂମା

ତାଙ୍କୁ ଚାଲିଯିବାକୁ କହିଲେ । ତା' ସତ୍ତ୍ୱେ ନୁମାଙ୍କ ପ୍ରତି ତାଙ୍କର ଶ୍ରଦ୍ଧାରେ ଊଣା ହେବାର ମୁଁ ଲକ୍ଷ୍ୟ କରିନାହିଁ । ସ୍କୁଲ ଛାଡ଼ିବା ପରେ ସେ ପ୍ରାୟ ସମସ୍ତ ଛାତ୍ରଛାତ୍ରୀଙ୍କ ଗାଁକୁ ଯାଇଛନ୍ତି । ପରିବାରରେ ସମୟ କଟାଇଛନ୍ତି । ସାଇକଲ ଖଣ୍ଡେ ଧରି ସେ ସାରା ଓଡ଼ିଶା ବୁଲିଛନ୍ତି । ଆମ ଗାଁକୁ ମଧ୍ୟ ଆସିଥିଲେ । ଖବର ପାଇ ଅଧ୍ୟାପକ ପ୍ରଫୁଲ୍ଲ ତ୍ରିପାଠୀ ତାଙ୍କୁ ଦେଖାକରିବାକୁ ଆସିଥାନ୍ତି । ସେ ପ୍ରସଙ୍ଗ କ୍ରମେ ମାୟାଧର ମାନସିଂହଙ୍କର ସମାଲୋଚନା କଲେ । ଚିତ୍ତଭାଇ ସଙ୍ଗେ ସଙ୍ଗେ ତାଙ୍କ ଯୁକ୍ତିକୁ ଖଣ୍ଡନ କରି କହିଲେ, ''ଓଡ଼ିଶାରେ ମାୟାଧର ମାନସିଂହ ହିଁ ଜଣେ ଲୋକ ଯେକି ନିର୍ଭିକ ଭାବରେ କହିପାରେ, ଲେଖିପାରେ ।'' ମୋର ମନେ ପଡ଼ିଲା ଚିତ୍ତଭାଇଙ୍କ 'ସାଗର ଯାତ୍ରୀ' ପୁସ୍ତକ ଉପରେ ମାନସିଂହ କଟୁ ସମାଲୋଚନା କରିଥିଲେ । ମୁଁ ଭାବୁଥିଲି ଚିତ୍ତଭାଇ ପ୍ରଫୁଲ୍ଲବାବୁଙ୍କ ସମାଲୋଚନାକୁ ସମର୍ଥନ କରିବେ । ମାତ୍ର ଆଶ୍ଚର୍ଯ୍ୟ ହେଲି- ଏ କିପରି ଲୋକ ? ଯାହାକୁ ମାନସିଂହ ସମାଲୋଚନା କରନ୍ତି ସେ ପୁଣି ମାନସିଂହଙ୍କୁ ଏଡ଼େ ଉଚ୍ଚରେ ସ୍ଥାନ ଦିଅନ୍ତି !

ଚିତ୍ତଭାଇ ମନସ୍ତତ୍ତ୍ୱ ଜାଣନ୍ତି । ଛାତ୍ର ଏବଂ ଶିକ୍ଷକ ଭିତରେ ବ୍ୟବଧାନ ଯେତିକି କମିବ ଛାତ୍ରର ମନ ଭିତରକୁ ପ୍ରବେଶ କରିବା ଶିକ୍ଷକ ପାଇଁ ସେତିକି ସହଜ ହେବ, ଏକଥା ସେ ଜାଣନ୍ତି । ସେଥିପାଇଁ ସେ ଆମ ପାଖେ ପାଖେ ରହୁଥିଲେ । ଛାତ୍ର ମନରୁ ଭୟ ଏବଂ ସଂକୋଚ ଦୂର କରିବାକୁ ସେ ସର୍ବଦା ଯତ୍ନଶୀଳ ଥା'ନ୍ତି । ମୁଁ ତହିଁର କେତେଟା ଦୃଷ୍ଟାନ୍ତ ଦେବି । ଥରେ ସେ ଖାଇବା ବେଳେ ପିଲାଙ୍କ ସଙ୍ଗେ ଧାଡ଼ିରେ ବସି ଖାଉଥିଲେ । ଭାଉ ମଂଜି, କଖାରୁ ମଂଜି ବା ପାଣି କଖାରୁ ମଂଜି ତରକାରୀ ଭିତରୁ ଆଣି ପିଲାଙ୍କ ଉପରକୁ ଲକ୍ଷ୍ୟକରି କାଣ୍ଡ ବିନ୍ଧିଲା ଭଳି ହାତରେ ଚିପି ପିଚ୍‌କାଇ ଦେଉଥିଲେ । ଅପର ଦିଗରୁ ଛାତ୍ର ଆଡୁ ମଧ୍ୟ ପ୍ରତିଶର ନିକ୍ଷିପ୍ତ ହେଉଥିଲା । ଏପରି କୌତୁକିଆ ପରିବେଶ ସୃଷ୍ଟି କରୁଥିଲେ । ଗାଧୋଇବା ବେଳେ ଯାକୁ ତାକୁ ଟାଣିନେଇ ଯାଉଥିବେ ନାଳ ଭିତରକୁ । ପିଲାଙ୍କ ସଙ୍ଗେ ଖେଳିବା, ଜଙ୍ଗଲକୁ ଜାଳକାଠ ସଂଗ୍ରହ ପାଇଁ ଯିବା, ବଗିଚା କାମ କରିବା, ଖୁଣ୍ଟା ତାଡ଼ିବା, ଜଙ୍ଗଲ ସଫାକରିବା, ବାସନ ମାଜିବା ଆଦି ସାମୂହିକ କାମ ସେ ଏକାଠି ମିଶି କରୁଥିଲେ । ଶିକ୍ଷକମାନେ ଛାତ୍ରଙ୍କ କାମକୁ ଯେପରି ତଦାରଖ କରନ୍ତି ସେପରି ନୁହେଁ । ଛାତ୍ର ସହିତ ଛାତ୍ର ଭାବରେ ଏକାଠି କାମ କରୁଥିଲେ । ପିଲାଙ୍କ ମନକୁ ପଢ଼ିବାପାଇଁ ସେ ଆଉ ଏକ ବ୍ୟବସ୍ଥା କରିଥିଲେ– ''ଡାଏରୀ ଲେଖିବା ।''

ଆମେମାନେ ସମସ୍ତେ ଡାଏରୀ ଲେଖୁଥିଲୁଁ । ତହିଁରେ ବିଭିନ୍ନ ଅଭିଯୋଗ

ଅସୁବିଧା କଥା ଲେଖୁଥିଲୁ । ଯାହା କହିବାକୁ ସହଜ ହୁଏନାହିଁ ଲେଖି ଦେଇ ହୁଏ ସହଜରେ । ଶିକ୍ଷକମାନଙ୍କ ବିରୁଦ୍ଧରେ ବି ଲେଖୁଥିଲୁଁ । ଏପରିକି ଚିତ୍ତଭାଇଙ୍କ ବିଷୟରେ ମଧ୍ୟ । ଚିତ୍ତଭାଇ ଡାଏରୀ ଗୁଡ଼ିକ ପଢୁଥିଲେ ।

ସପ୍ତାହରେ ଥରେ ରାତିରେ ଆଲୋଚନା ସଭା ହେଉଥିଲା– ସାଧାରଣତଃ ସ୍କୁଲ ମାନଙ୍କରେ ଯେଉଁଭଳି ତର୍କସଭା ହେଉଥିଲା ଏହା ସେପରି ନୁହେଁ । ଏଥିରେ ବ୍ୟତିକ୍ରମ ଥିଲା । ଆଲୋଚ୍ୟ ବିଷୟ ପୂର୍ବରୁ ଘୋଷଣା କରାଯାଉନଥିଲା । ଆଲୋଚନା ସଭାର ଅବ୍ୟବହିତ ପୂର୍ବରୁ ଦୁଇଜଣ ଶିକ୍ଷକ ଏବଂ ଜଣେ ଛାତ୍ର ପ୍ରତିନିଧି ଏପରି ତିନିଜଣିଆ କମିଟି (ବିଷୟ ନିର୍ବାଚନୀ କମିଟି) ଆଲୋଚନା ପାଇଁ ଦଶଟି ବିଷୟ ସ୍ଥିର କରୁଥିଲେ । ଚିଠାଗୁଡ଼ିକ ପୁଡ଼ିଆ ଆକାରରେ ବନ୍ଦ କରି ରଖାଯାଉଥିଲା । ଯେଉଁମାନେ ସେହି ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରିବେ ସେମାନେ ଜଣେ ଜଣେ ଆସି ଗୋଟିଏ ଗୋଟିଏ ଚିଠା ନେଇଯିବେ । ତହିଁରେ ନିୟମ ଥିଲା– ଚିଠା ଖୋଲି ସେଇଠି ପଢ଼ିବେ ଏବଂ ଅନ୍ତରାଳକୁ ଚାଲିଯିବେ । ଚିନ୍ତା କରିବାକୁ ତାଙ୍କୁ ପାଞ୍ଚମିନିଟ୍ ସମୟ ଦିଆଯାଉଥିଲା । ୫ ମିନିଟ୍ ପରେ ଘଣ୍ଟା ବାଜୁଥିଲା ଏବଂ ବକ୍ତାଙ୍କୁ କହିବାକୁ ପାଞ୍ଚମିନିଟ୍ ସମୟ ଦିଆଯାଉଥିଲା । ତାଙ୍କ ଭାଷଣ ପରେ ତା ଉପରେ ଅନ୍ୟମାନେ ଆଲୋଚନା କରୁଥିଲେ । ଏହା କୁଇଜ୍ କାର୍ଯ୍ୟକ୍ରମ ଭଳି ଥିଲା । ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇ କହିବାକୁ ପଡୁଥିଲା । ଏହି ପ୍ରଣାଳୀ ଅଧିକରୁ ଅଧିକ ପିଲାଙ୍କୁ ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ଦେଉଥିଲା । ପିଲାମନରୁ ଭୟ ଦୂର କରି ନିର୍ଭୀକ ଭାବରେ ବକ୍ତବ୍ୟ ପ୍ରଦାନ ପାଇ ଏହା ଏକ ମଂଚ ଥିଲା । ଏହା ଏକ ସଫଳ ପ୍ରୟୋଗ ଥିଲା । ସେ ସମୟରେ ହାଇସ୍କୁଲ ସ୍ତରରେ ହେଉଥିବା ଭାଷଣ ପ୍ରତିଯୋଗିତାରେ ଆମ ପିଲାଏ ବାଜି ମାରି ନେଉଥିଲେ ।

ଥରେ ଥରେ ଶିକ୍ଷଣୀୟ ଚଳଚ୍ଚିତ୍ର ସେ ଆମକୁ ଦେଖାଉଥିଲେ । 'ଦୋ ବିଘା ଜମିନ୍' ଏବଂ 'ଜାଗୃତି' ଚଳଚ୍ଚିତ୍ର ଦେଖିବାପାଇଁ ଆମେ ଅନୁଗୁଳକୁ ଆସିଥିଲୁଁ । 'ଜାଗୃତି' ଉପରେ ଆଲୋଚନା କରି ତାହାର ମନସ୍ତାତ୍ତ୍ୱିକ ଦିଗ ଉପରେ ସେ ଆଲୋକପାତ କରିଥିଲେ । ଚମରିମୁଣ୍ଡାରୁ ଅନୁଗୁଳ (ବାଜି ରାଉତ ଛାତ୍ରାବାସ) ପ୍ରାୟ ଆଠ ମାଇଲ ବାଟ । ଆମେ ଚାଲି କରି ଆସୁଥିଲୁ । ଥରେ ଅନୁଗୁଳ ଟ୍ରେନିଂ କଲେଜରେ 'ଦଳବେହେରା' ନାଟକ ମଂଚସ୍ଥ ହୋଇଥିଲା । ଆମେ ସମସ୍ତେ ଦେଖିବାକୁ ଆସିଥିଲୁ । ନାଟକର ସଫଳ ଅଭିନୟ ଯୋଗୁଁ ଆମେ ସମସ୍ତେ ଆନନ୍ଦିତ

ହୋଇଥାଉଁ । ଫେରିଲା ବାଟରେ ଚିତ୍ତଭାଇ ଅଭିନୟ କିପରି ହେଲା ବୋଲି ପଚାରିଲେ । ଆମେ ସମସ୍ତେ ଉତ୍ସାହିତ ହୋଇ ସୁନ୍ଦର ବୋଲି କହିଲୁଁ । ଏଥର ସେ ଦଳବେହେରାର ଚରିତ୍ର ଚିତ୍ରଣ କର ବୋଲି ବଂଶୀଧର ଭାଇ, ଦୁର୍ଗାମାଧବ, ହରଭାଇ ଆଦି ଉପର ଶ୍ରେଣୀର ପିଲାଙ୍କୁ କହିଲେ । ଦଳବେହେରାର ଭୂରି ଭୂରି ପ୍ରଶଂସାରେ ସେମାନେ ଆଲୋଚନାକୁ ଆଗେଇ ନେଉଥାନ୍ତି । ଶେଷରେ ଚିତ୍ତଭାଇ ସେମାନଙ୍କର ମତକୁ ଖଣ୍ଡନ କରି ଏକା ଥରକେ ସମସ୍ତଙ୍କୁ ସ୍ତବ୍ଧ କରିଦେଲେ । ତାଙ୍କ ଭାଷାରେ- ଲେଖକ ଦଳବେହେରାକୁ ଏକ ବୋକା ଓଡ଼ିଆ ପାଇକ ସର୍ଦ୍ଦାର ଭାବରେ ଚିତ୍ରିତ କରିଛନ୍ତି । ପାଇକ ସର୍ଦ୍ଦାର ଦଳବେହେରା ଇଂରେଜ ବିରୁଦ୍ଧରେ ଗରିଲା ଯୁଦ୍ଧ ଚଳାଇଥିଲେ । ସେ ଛଦ୍ମବେଶରେ ଥାଇ ଗୁପ୍ତଚର ପାଖରୁ ଖବର ପାଇଲେ ଯେତିକି ଖାଦ୍ୟ ମହଜୁଦ ଅଛି ତହିଁରେ ପାଇକମାନେ ୧୨ ବର୍ଷ ପର୍ଯ୍ୟନ୍ତ ଚଳିଯିବେ । ଅଥଚ ସେ ନାଉରିଆକୁ ଆର୍ଥିକ ସହାୟତା ଦେବା ପରିବର୍ତ୍ତେ ଇଂରେଜ ପାଖରେ ଧରା ଦେଇଛନ୍ତି ଏବଂ ପୁରସ୍କାର ବାବଦ ଘୋଷିତ ୫୦୦ ଟଙ୍କା ନାଉରୀକୁ ଦେବାକୁ ଅନୁରୋଧ କରିଛନ୍ତି । ମହାଭାରତରେ ଦ୍ରୋଣ ଗୁରୁ ଏକ ବଳିଷ୍ଠ ଚରିତ୍ର । ତାଙ୍କ ସମ ଯୋଦ୍ଧା କେହି ନାହିଁ । ହାତରେ ଧନୁ ଥିଲେ ନାରାୟଣ ମଧ ଦ୍ୱିତୀୟ ହୋଇଯାନ୍ତି । ଏଭଳି ଯୋଦ୍ଧାଙ୍କ ଚରିତ୍ରରେ ଏପରି ଦୁର୍ବଳତା କିପରି ଆସିଲା ଯେ ସେ ପରଶ୍ରୀକାତର ଭାବରେ ଏକଲବ୍ୟର ଦକ୍ଷିଣ ବୃଦ୍ଧାଙ୍ଗୁଷ୍ଠି ମାଗିଛନ୍ତି ! ଭାରତୀୟ ଆଚାର୍ଯ୍ୟର ମର୍ଯ୍ୟାଦା କ୍ଷୁଣ୍ଣ କରିଛନ୍ତି । ଏଥିପାଇଁ ବ୍ୟାସଦେବଙ୍କୁ ଚିତ୍ତଭାଇ ସମାଲୋଚନା କରିଛନ୍ତି । ତାଙ୍କ ଭାଷାରେ ଆମେ ଆମ ପିଲାଙ୍କୁ ଏପରି ଶିକ୍ଷା ଦେବୁ ସେମାନେ ଏପରି ପକ୍ଷପାତୀ ଓ ପରଶ୍ରୀକାତର ଗୁରୁଙ୍କୁ ଆଙ୍ଗୁଠି ଦେଖାଇ ନାସ୍ତି କରିଦେବେ । ଉପରୋକ୍ତ ଉଭୟ ଦୃଷ୍ଟାନ୍ତରେ ଚିତ୍ତଭାଇ ନିର୍ଭୀକ ଭାବରେ ସମାଲୋଚନା କରିଛନ୍ତି । ଏଥିରୁ ଆମେ ତାଙ୍କର ସ୍ୱାଭିମାନୀ ଓଡ଼ିଆ ଓ ସ୍ୱାଭିମାନୀ ଭାରତୀୟ ସ୍ୱଭାବର ପରିଚୟ ପାଇପାରିବା ।

ଚିତ୍ତଭାଇ ରାଗିବା ମୁଁ ଜାଣିନାହିଁ । ତାଙ୍କ ଭିତରେ ଅପାର ସ୍ନେହ ସତେ ଯେପରି ସାଇତା ହୋଇରହିଛି । କିଛି ଭୁଲ୍ କଲେ ଭୁଲେଇ ଦିଅନ୍ତି । ଅଧିକ ଭୁଲ୍ କଲେ ଅସନ୍ତୁଷ୍ଟ ହୁଅନ୍ତି, ହେଲେ ରାଗନ୍ତି ନାହିଁ । ସେଥିପାଇଁ ଆମେ ସବୁ ସ୍ନେହକାଙ୍ଗାଳ ପିଲାଏ ତାଙ୍କ ପ୍ରତି ମୁଗ୍ଧ ହୋଇ ରହିଥାଉଁ । ତାଙ୍କର ଶିକ୍ଷାଦାନ ପଦ୍ଧତି ବ୍ୟବହାରକୁଶଳତାରେ ଆମେ ଏତେ ମୁଗ୍ଧ ଥାଉଁ ଯେ ଅନ୍ୟ ଶିକ୍ଷକମାନଙ୍କର କ୍ଲାସ୍ ଆମକୁ ରୁଚେ ନାହିଁ । ଅନ୍ୟ ଶିକ୍ଷକ ମାନଙ୍କର ତ୍ରୁଟି ଦେଖାଇ

ଡାଏରୀରେ ଅଭିଯୋଗଭରା ଲେଖା ସବୁ ଭର୍ତ୍ତି ହୋଇଯାଏ । ଚିତ୍ତଭାଇ ସେହି କ୍ଲାସ ନିଅନ୍ତୁ ବୋଲି ପିଲାଏ ଚାହାଁନ୍ତି । ମାତ୍ର ତାହା ସମ୍ଭବ ହୁଏ ନାହିଁ । ସେ ଅବା ଏକୁଟିଆ କେତୋଟି କ୍ଲାସ ନେଇପାରିବେ ? ଚିତ୍ତଭାଇ ଆଗରୁ ପ୍ରସ୍ତୁତ ହୋଇଥାନ୍ତି । ପୁସ୍ତକ ହାତରେ ଧରି ସେ ପଢ଼ାନ୍ତି ନାହିଁ । ଲେକ୍ଚର ଦିଅନ୍ତି ଆମେ ସବୁ ନୋଟ ବହି ଧରି ଟିପି ଆଣୁ । କେତୋଟି ବହି ପଢ଼ି ସେ ପ୍ରସ୍ତୁତ ହୋଇଥାନ୍ତି ତାହା ଆମେ ଜାଣି ପାରୁନା, ଖାଲି ମୁଗ୍ଧ ହୋଇ ଟିପି ଚାଲିଥାଉଁ । ଏହା ଅନ୍ୟ ଶିକ୍ଷକମାନଙ୍କ ଦ୍ୱାରା ହୁଏନାହିଁ । ସେମାନେ ଖଣ୍ଡେ ବହି ଧରି ତାକୁ ହିଁ ପଢ଼ନ୍ତି ଓ ପଢ଼ାନ୍ତି । ଆମମାନଙ୍କ ଅସନ୍ତୋଷର ଫଳ ହୁଏ ଗୁରୁତର । ଶିକ୍ଷକମାନେ ଅଭିମାନ କରି ସ୍କୁଲ ଛାଡ଼ି ଚାଲିଯାନ୍ତି । ଏକେତ ଜଙ୍ଗଲ ଭିତରେ ଆମ ସ୍କୁଲ ରହିଥିବାରୁ କେହି ଶିକ୍ଷକ ଆସନ୍ତି ନାହିଁ, ଯେଉଁମାନେ ଆସନ୍ତି ଛାତ୍ରମାନେ ତାଙ୍କୁ ତୁଚ୍ଛ ଜ୍ଞାନ କରୁଛନ୍ତି ଭାବି ସ୍କୁଲ ଛାଡ଼ି ଚାଲିଯାନ୍ତି । ନୂତନ ଶିକ୍ଷକ ଯୋଗାଡ଼ କରିବାକୁ ଚିତ୍ତଭାଇଙ୍କୁ ବହୁ ହଇରାଣ ହେବାକୁ ପଡ଼େ । ତଥାପି ଚିତ୍ତଭାଇ ପିଲାଙ୍କ ଉପରେ କଠୋର ହୁଅନ୍ତି ନାହିଁ, ବିରକ୍ତ ହୁଅନ୍ତି ନାହିଁ ।

ଜ୍ଞାନ ଆହରଣ ତଥା ଭାଷାର ବହୁଳ ବ୍ୟବହାର ପାଇଁ ଲାଇବ୍ରେରୀ ଏକ ମୁଖ୍ୟ ସାଧନ । ଚିତ୍ତଭାଇ ଲାଇବ୍ରେରୀ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଲାଇବ୍ରେରୀକୁ କିପରି ଅଧିକରୁ ଅଧିକ ଭାବରେ ପିଲାମାନେ ବ୍ୟବହାର କରି ପାରିବେ ସେଥିପାଇଁ ସେ ଯତ୍ନଶୀଳ ଥିଲେ । ଅଧିକ ପଢ଼ିବା ପାଇଁ ଉତ୍ସାହିତ କରୁଥିଲେ । ଭ୍ରମଣ କାହାଣୀ ଏବଂ ଗଳ୍ପ ଉପନ୍ୟାସ ପଢ଼ିବା ପାଇଁ ସେ ସୁପାରିଶ କରନ୍ତି । ଏହା ଅଧିକ ଗତିରେ ପଢ଼ିହୁଏ । ତାଙ୍କ ମତରେ ଗଳ୍ପ ଉପନ୍ୟାସ ଅଧ୍ୟୟନ ଦ୍ୱାରା ଛାତ୍ରର ଭାଷାଜ୍ଞାନ ମାର୍ଜିତ ହୋଇଥାଏ ଅତି ସହଜରେ । ମୁଖ୍ୟତଃ ଓଡ଼ିଆ, ହିନ୍ଦି ଏବଂ ବଙ୍ଗଳା ଭାଷାର ପୁସ୍ତକ ଅଧିକ ସଂଖ୍ୟାରେ ଲାଇବ୍ରେରୀରେ ଥାଏ । ଆମେମାନେ ସମସ୍ତେ ଏହି ତିନିଟିଯାକ ଭାଷା ଜାଣିଥିଲୁ । ସ୍ୱାଧ୍ୟାୟ ଫଳରେ ଏହା ହୋଇଥିଲା । କ୍ଲାସ ସମୟକୁ ଛାଡ଼ି ଅନ୍ୟ ସମୟରେ ଲାଇବ୍ରେରୀ ପ୍ରାୟ ଖୋଲା ରହୁଥିଲା । କେଉଁ ବହିରେ ବିଷୟଟି ଅଛି ଏବଂ କେଉଁ ଲେଖକଙ୍କର ବହି ସାହାଯ୍ୟ କରିବ ତାହା କ୍ଲାସରେ ପଢାଇଲା ବେଳେ ଚିତ୍ତଭାଇ କହି ଦେଉଥିଲେ ଓ ଆମେ ତାହା ଲାଇବ୍ରେରୀରୁ ଆହରଣ କରୁଥିଲୁଁ । ପାଠ୍ୟ ଖସଡ଼ାରେ ଇଂରାଜୀ ଏବଂ ସଂସ୍କୃତ ଭାଷା ଶିକ୍ଷାର ପ୍ରଚଳନ ନ ଥିଲା । ଚିତ୍ତଭାଇ ସେଥିପାଇଁ କ୍ଲାସ ସମୟ ବାହାରେ ଅଧଘଣ୍ଟା ଲେଖାଏଁ ଇଂରାଜୀ ଏବଂ ସଂସ୍କୃତ

ଭାଷା ଶିକ୍ଷା ଦେଉଥିଲେ– ଏଥିପାଇଁ ଗାଧୋଇବା ପାଇଁ ଉଦ୍ଦିଷ୍ଟ ରୁଟିନ ସମୟ ସକାଳ ୯.୦୦ ରୁ ୯.୩୦ ପର୍ଯ୍ୟନ୍ତ ଅଧଘଣ୍ଟା ପାଇଁ ଏହି କ୍ଲାସ ହେଉଥିଲା । ଯେଉଁମାନେ ଆଗ୍ରହୀ ଥିଲେ ସେମାନେ ଗାଧୋଇବା କାମ ସକାଳୁ ଶେଷ କରି ଦେଉଥିଲେ ଓ କ୍ଲାସରେ ଯୋଗ ଦେଉଥିଲେ ।

ଚିତ୍ତଭାଇ ଲାଇବ୍ରେରୀକୁ ଅଧିକ ଗୁରୁତ୍ୱ ଦେଉଥିଲେ । ତେଣୁ ବହୁମୂଲ୍ୟ ତଥା ଉଚ୍ଚକୋଟୀର ପୁସ୍ତକରେ ଲାଇବ୍ରେରୀ ଭରିଥିଲା । ଏପରି ଏକ ଗ୍ରନ୍ଥାଗାର ତତ୍‌କାଳୀନ କଲେଜ ମାନଙ୍କରେ ମଧ୍ୟ ଦୁର୍ଲ୍ଲଭ ଥିଲା । ଥରେ ଗୃହ ନିର୍ମାଣ ପାଇଁ ଆସିଥିବା ଅନୁଦାନ ଅର୍ଥକୁ ଚିତ୍ତଭାଇ ବିଜ୍ଞାନ ସାମଗ୍ରୀ ଏବଂ ଲାଇବ୍ରେରୀରେ ଖର୍ଚ୍ଚ କରିଦେଲେ । ଫଳରେ ଡ଼ି.ପି. ଆଇ.ଙ୍କ ପାଖରୁ କୈଫିୟତ ଦେବାପାଇଁ ନୋଟିସ ଆସିଲା । ଏହାର ଜବାବରେ ଚିତ୍ତଭାଇ ସମଗ୍ର ଓଡ଼ିଶାର ହାଇସ୍କୁଲ ହେଡମାଷ୍ଟରଙ୍କ ସମାବେଶରେ ଅନୁଷ୍ଠିତ ସମ୍ମିଳନୀରେ ଭାଷଣ ଦେଇ ଶିକ୍ଷା ବ୍ୟବସ୍ଥାରେ ସରକାରୀ ହସ୍ତକ୍ଷେପର ସମାଲୋଚନା କରି କହିଲେ– ଆମେ ଏଭଳି ବୋମା ନିର୍ମାଣ କରୁଛୁଁ ଯେଉଁଗୁଡ଼ିକ କି ଓଡ଼ିଶାର ସର୍ବତ୍ର ବିଛାଡ଼ି ହୋଇ ବିସ୍ଫୋରଣ ଘଟାଇବ । ସେତେବେଳେ ଆଉ ଡି.ପି.ଆଇଙ୍କ ତାଗିଦ୍ କାମ କରିବ ନାହିଁ । ଡ଼ି.ପି ଆଇ ସଭାରେ ଉପସ୍ଥିତ ଥିଲେ । ପରେ କ୍ରୁଦ୍ଧ ହୋଇ ସ୍କୁଲକୁ ଅନୁଦାନ ବନ୍ଦକରି ଦେଇଥିଲେ । ଚିତ୍ତଭାଇ ଆଶାବାଦୀ, ତାଙ୍କର ଦୃଢ଼ ଆଶା ନିଶ୍ଚୟ ଦିନେ ଅନ୍ୟାୟ ଅତ୍ୟାଚାର ଦୂର ହେବ । ଅନ୍ଧକାର ଦୂର ହେବ ଓ ସୂର୍ଯ୍ୟ ଉଦୟ ହେବ । ବିଦେଶରେ ସେ ଶିକ୍ଷାନୁଷ୍ଠାନଗୁଡ଼ିକୁ ଦେଖି ତହିଁରୁ ସାର ସଂଗ୍ରହ କରି ନୂଆ କରି ଏକ ପ୍ରୟୋଗ ଚମ୍ପତିମୁଣ୍ଡାରେ କରିଥିଲେ । ଆମମାନଙ୍କୁ ଯୋଗ୍ୟ କରିବାକୁ ସେ ସବୁ ରକମର ପ୍ରୟାସ କରିଛନ୍ତି । ଛାତ୍ରମାନେ ନିର୍ଭୀକ ମଣିଷ ହୋଇ ବାହାରିବେ ବୋଲି ତାଙ୍କର ଦୃଢ଼ ଆଶା ଥିଲା । ସେହି ଆଶା ଯୋଗୁଁ ଡ଼ି.ପି ଆଇଙ୍କୁ ଶୁଣାଇଥିଲେ ଚେତାବନୀ । ମାତ୍ର ବିଡ଼ମ୍ବନା ଆମେ ଯୋଗ୍ୟ ହୋଇପାରିଲୁ ନାହିଁ । ପୁଣି ସେହି ଶଗଡ଼ଗୁଳାରେ ପଡ଼ିଗଲୁ । ଆର୍ଥିକ ସଫଳତାକୁ ସଫଳତା ବୋଲି ଧରିନେଲୁ । ବୁଢ଼ା ହୋଇ ଗଲୁ । ଚିତ୍ତଭାଇ ତାରୁଣ୍ୟରପାଠ ପଢ଼ାଇ ଆସିଛନ୍ତି । ତାଙ୍କର ବୟସ ବଢ଼ିଛି, ମାତ୍ର ତାଙ୍କର ମନରୁ ତାରୁଣ୍ୟ ଦୂରେଇ ଯାଇନାହିଁ । ତାଙ୍କ ନିରାମୟ ଦୀର୍ଘ ଜୀବନ କାମନା କରି ରହିଲି ।

*ଶାନ୍ତି କୁମାର ପାଣିଗ୍ରାହୀ*
*ମାନପୁର*

# କରନ୍ତି ହୃଦୟ ରଞ୍ଜନ

ଆମେ ତାଙ୍କୁ ଶ୍ରଦ୍ଧାରେ ଡାକୁ ଚିତ୍ତଭାଇ । ସିଏ ଆମରି ପରି ମଣିଷ । କିନ୍ତୁ ଚେତନାଦୀପ୍ତ ମଣିଷ ଭାବରେ ବିବେକର ଆଲୋକକୁ ବିକିରିତ କରନ୍ତି । ସଭା ସମିତିରେ ହଜାର ହଜାର ଲୋକଙ୍କ ମେଳରେ ସିଏ ବସିଥିବେ । ପ୍ରତ୍ୟେକଙ୍କ ହୃଦୟର ଭାବନାକୁ ଯୋଡ଼ି ଗୋଟିଏ ଖିଅକୁ ଆବିଷ୍କାର କରୁଥିବେ । ତାଙ୍କ ନୀତି ଅନୁସାରେ ସେ ସବୁରି ହୃଦୟକୁ ଏକ ଅନନ୍ୟ ଶ୍ରଦ୍ଧାରେ ରଞ୍ଜାଇ ଦିଅନ୍ତି ।

ଥରେ ୟୁନିଭର୍ସରେ ଚିତ୍ତଭାଇଙ୍କ ଦ୍ୱାରା ଏକ ପୁସ୍ତକ ଉନ୍ମୋଚିତ ହେଉଥିଲା । ତା' ପରେ ଥିଲା ଭୋଜନ କାର୍ଯ୍ୟକ୍ରମ । ଧାଡ଼ିରେ ଠିଆ ହୋଇଥାଉ । ଚିତ୍ତଭାଇ ଥିଲେ ମୋ ପଛପଟେ । ସିଏ ଥାଳିଟି ଧରି ଠିଆ ହୋଇଥାଆନ୍ତି । ଖାଦ୍ୟ ପରିବେଷଣ ଆରମ୍ଭ ହୋଇ ନଥାଏ । ଚିତ୍ତଭାଇ କହିଲେ, ''ଆପଣ ଆଗକୁ ଯାଆନ୍ତୁ । ମୁଁ ପଛରେ ଅଛି ।''

ଆଉ ଦିନେ ତାଙ୍କ ସହିତ ଦେଖାହୁଏ ପୁରୀରେ । ସମୁଦ୍ରକୂଳ ଚକ୍ରତୀର୍ଥ ରୋଡ୍‌ରେ ଥିବା 'ନନ୍ଦୀ କଟେଜ୍'ରେ । ତିରିଶ, ଚାଳିଶ ଯୁବକଙ୍କ ଗହଣରେ ସିଏ ଆଲୋଚନା କରୁଥାଆନ୍ତି । ସମ୍ଭ୍ରମରେ, ଗଦ୍ ଗଦ୍ ଚିତ୍ତରେ ପ୍ରଣତି ଜଣାଇଲି । ସେଇଠୁ ଚିତ୍ତଭାଇ କହିଲେ, ''ହାତ ଟିକିଏ ହୁଗୁଳା କରି, ହୃଦୟର ଗଣ୍ଠିଗୁଡ଼ାକରୁ ଆପଣ ବାହାରି ଆସିଲେ ଭଲ ହୁଅନ୍ତା ।'' ଅନେକ କଥାବାର୍ତ୍ତା ହେଲା । ସେ ଆଲୋଚନା ଅବସରରେ ଅନେକ କିଛି କହିଲେ । ଆମର ଅଯଥାର୍ଥ ତ୍ରୁଟି ବିଚ୍ୟୁତିକୁ ନେଇ ସୁଧାରିବାର ଏକ ସୁଯୋଗ ସୃଷ୍ଟି କଲେ ।

ଚିତ୍ତଭାଇ ଅଳ୍ପ କଥା କୁହନ୍ତି । ବେଶୀ କାର୍ଯ୍ୟ କରିବା ପାଇଁ ଭଲ ପାଆନ୍ତି । ଆଜି ରକ୍ତ, ମାଂସ ଶରୀର ଧାରଣ କରିଥିବା ଏଇ ବିରଳ ବ୍ୟକ୍ତିଟିକୁ ଆମେ ଯାହା ଦେଖୁ ତା'ଠାରୁ ସେ ଊର୍ଦ୍ଧ୍ୱରେ । ବାସ୍ତବିକ ଚେତନାସ୍ତରରେ ଚିତ୍ତଭାଇ ଆମ ମାନଙ୍କଠାରୁ ବାରି ହୋଇ ପଡୁଥିବା ମଣିଷଟିଏ ପରି ଲାଗନ୍ତି ।

ତାଙ୍କ ଲିଖିତ କେତୋଟି ପୁସ୍ତକ ପଢ଼ିବାର ସୁଯୋଗ ଏ ଲେଖକ ପାଇଛି ।

ସେଥିରୁ ଗୋଟିଏ "ଡେନ୍‌ମାର୍କ ଚିଠି"। ଘରେ ଥିବା ନିଜର ସମ୍ପର୍କୀୟମାନଙ୍କ ପାଖକୁ ଚିଠି ଲେଖିବା ଅବସରରେ ସେ ଯେଉଁ ଜୀବନଧର୍ମୀ, ବିଶ୍ୱଦୃଷ୍ଟିର ପରିଚୟ ଦେଇଛନ୍ତି ତାହା ଅନନ୍ୟ। ଗୋଟିଏ ମଣିଷ ପାଖରେ ଶିକ୍ଷା, ସମାଜ, ରାଜନୀତି, ସାହିତ୍ୟ, ମନସ୍ତତ୍ତ୍ୱ, ଦର୍ଶନ ଇତ୍ୟାଦିର ସାର୍ଥକ ପରିପ୍ରକାଶ ଦେଖିଲେ ବିସ୍ମିତ ହେବାକୁ ପଡ଼େ। ବାଗଲପୁରର ଏଇ ମଣିଷ ବିଶ୍ୱକୁ ଆପଣା ଭିତରେ ଅନୁଭବ କରିବାର ଦୃଷ୍ଟାନ୍ତ ପରବର୍ତ୍ତୀ ସମୟରେ ଦୁର୍ଲଭ। ଆପଣା ବିଶ୍ୱାସରେ ଆସ୍ଥା ରଖିଥିବା ଚିତ୍ତଭାଇ ଏଇଥିପାଇଁ ଅନ୍ୟ ଅନେକଙ୍କର ବିଶ୍ୱାସର ପାତ୍ର ହୋଇପାରନ୍ତି।

*ସୁବୋଧ କୁମାର କାନୁନଗୋ*
*ଭୁବନେଶ୍ୱର*

# ସେଇ କରୁଣ ମୁହୂର୍ତ୍ତଟି

ମୁହୂର୍ତ୍ତଗୁଡ଼ିକ ଆସନ୍ତି ଆଉ ଚାଲି ଯାଆନ୍ତି। ସେମାନଙ୍କର ଆସିବା ଆମେ ଜାଣିପାରୁନା କି ଯିବା ବି ଆମ ଆଖିରେ ଧରା ଦିଏନା। ଅଜଣା ଅଶୁଣା ଭାବରେ ଆସୁଥିବା ଏହି ମୁହୂର୍ତ୍ତଗୁଡ଼ିକ କେଡ଼େ ବଳିଆର ସତେ ? ସେମାନଙ୍କର କାଉଁରି ଛୁଆଁରେ କେତେବେଳେ କ'ଣ ଯେ ଅଘଟଣ ଘଟିଯାଏ ତା'ର ବା କଳନା କରିଚି କିଏ ? ସବୁ ସରିଗଲା ପରେ ଆମେ ଜାଣୁ ଏଇ ମୁହୂର୍ତ୍ତମାନଙ୍କ ପାଖରେ ଆମେ କେଡ଼େ ନିଊନ। ଝଡ଼ ବାଟରେ ଝଡ଼ ଚାଲିଯାଏ- ଚିଲିକା ପୁଣି ଥିର ହୁଏ- ଢେଉଗୁଡ଼ିକ ପୁଣି କଳ କଳ ହୋଇ ନାଚନ୍ତି- ହଂସ ହଂସୁଳୀ ପୁଣି ପାଣିରେ ପହଁରନ୍ତି, ଖରା ଚିକି ଚିକି ମାରେ। ହେଲେ ବାପା 'ଜାଇ'କୁ ଖୋଜି ଖୋଜି ଆଉ ପାଆନ୍ତି ନାହିଁ। ଚିତ୍ତଭାଇଙ୍କ ଓ ମୋ ଜୀବନରେ ଦିନେ ଏମିତି ଏକ ମୁହୂର୍ତ୍ତ କେଡ଼େ ବଡ଼ ଦାଉ ସାଧି ଦେଇ ନ ଥିଲା ! କାଲି ପରି ସବୁ ମନେ ପଡ଼ି ଯାଉଛି।

ଲୋକେ କହନ୍ତି ଅନୁଗୁଳର ରାଜା ସୋମନାଥ ସିଂ ଜଗଦେବଙ୍କର ଷୋଳଜଣ ସେନାପତି ଥିଲେ। ସେମାନଙ୍କ ଭିତରେ ପ୍ରଧାନ ଥିଲେ ସିନ୍ଧୁ ଗଡ଼ନାୟକ। କଳାପାଟ ଠାକୁରାଣୀଙ୍କ ଭକ୍ତ, ଘର ବୁଗୁଡ଼ିଆ ପଡ଼ା। ତାଙ୍କର ଭାଇ କିଏ ଜଣେ ଥିଲେ ଅନାମ ଚମ୍ପତିରାୟ। ତାଙ୍କର କିଛି ରାଜଦତ୍ତ ନିଷର

ଭୂସଂପତ୍ତି ଥିଲା । ଚମ୍ପତିରାୟଙ୍କୁ ମନେ ପକାଇବାକୁ ଲୋକେ ସେ ସଂପତ୍ତିକୁ କହୁଥିଲେ ଚମ୍ପତିମୁଣ୍ଡା । ଛୋଟ ଗାଁଟିଏ, ହେଲେ ଏବେ ବେଶ୍ ଜଣାଶୁଣା ।

'ମୁଣ୍ଡା' କହିଲେ ଗୋଟିଏ ଆଦିବାସୀ ସଂପ୍ରଦାୟକୁ ବୁଝାଏ । କାଳ ଥିଲା ଯେତେବେଳେ ଏଇ ଗୋଷ୍ଠୀର ଲୋକ ଖାଲି ଭାରତ ନୁହେଁ ଦକ୍ଷିଣ ପୂର୍ବ ଏସିଆରେ ବି ପୂରି ରହିଥିଲେ । ପାହାଡ଼ ପର୍ବତର ତାଳୁଠାରୁ ସମତଳ ଯାଏ ଏମାନେ ଜମି ତିଆରି କରିଥିଲେ । ଏମିତି ଜମି ତିଆରି କରିବାରେ ଏଇମାନେ ହିଁ ପୃଥିବୀରେ ଆଦିମ ମଣିଷ । ଏଇ ଜାତିର ନାମ ଅନୁସାରେ 'ଜମି'ର ନାମ 'ମୁଣ୍ଡା' ହୋଇ ଯାଇଛି ବୋଲି ପଣ୍ଡିତମାନେ କହନ୍ତି ।

ସେ ଯାହା ହେଉ ଦିନେ ଏଇ ଚମ୍ପତିମୁଣ୍ଡା ଗାଁର ଘୋର ଜଙ୍ଗଲ ଭିତରେ ତିନିଜଣ ସଂଗ୍ରାମୀ ପହଞ୍ଚିଲେ । ସେମାନେ ହେଲେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ ଓ ଶ୍ରୀ ଚିତ୍ତରଞ୍ଜନ ଦାସ । ସମସ୍ତେ ଥିଲେ ଗାନ୍ଧୀ ରବୀନ୍ଦ୍ରନାଥଙ୍କ ନିଷ୍ଠାପର ଶିଷ୍ୟ । ଗାନ୍ଧୀଜୀଙ୍କର ୱାର୍ଦ୍ଧା ଶିକ୍ଷା ଓ କବିଗୁରୁ ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ଶିକ୍ଷା ଓ ଉଭୟ କୂଳକୁ ଫେଣ୍ଟି ସ୍ୱାଧୀନ ଭାରତର ପିଲାମାନଙ୍କୁ ଏକ ନୂଆ ଶିକ୍ଷାର ସୁଆଦ କିପରି ଚଖେଇ ହେବ ଏହାହିଁ ଥିଲା ସେମାନଙ୍କର ସ୍ୱପ୍ନ । ସେଇଥିପାଇଁ ଲୋଡ଼ା ପଡୁଥିଲା ଗ୍ରାମାଞ୍ଚଳରେ ଅଧିକ ଜମିବାଡ଼ି । ସହରରେ ନୁହେଁ । ଚମ୍ପତିମୁଣ୍ଡାରେ ସେମାନେ ବେଶ୍ ଭଲ ଜାଗା ପାଇବେ ବୋଲି ସେମାନଙ୍କୁ ଭରସା ଦେଇଥିଲେ ବଡ଼କେରା ଗ୍ରାମ ପଞ୍ଚାୟତର ସରପଞ୍ଚ୍ ଦୁର୍ଗାଚରଣ ଦାଶ ଓ ତୁମୁଣି ଗ୍ରାମର ପ୍ରଧାନ ଶ୍ରୀ ପୁରନ୍ଦର ରାଉଳ । ସେକାଳକୁ ଚାହିଁଲେ ଦୁର୍ଗାଚରଣ ଥିଲେ ଖୁବ୍ ଆଗୁଆ ମନୋଭାବର ଲୋକ୍, ଆଉ ପୁରନ୍ଦର ଥିଲେ ଜଣେ ଆଶୁକବି । ଦି'ଜଣଙ୍କର ଚୌଧୁରୀ ଦମ୍ପତିଙ୍କ ସହିତ ବେଶ୍ ଭାବନାବ ଥିଲା । ଚିତ୍ତରଞ୍ଜନ ସେତେବେଳେ ସେମାନଙ୍କ ପାଖରେ ନୂଆ ।

ଦଣ୍ଡକାରଣ୍ୟ ନ ହେଉ ପଛେ ଚମ୍ପତିମୁଣ୍ଡା ଅରଣ୍ୟମୟ ଥିଲା । ସେଥିପାଇଁ ବାଟ କଢ଼ାଇବାକୁ ସାଙ୍ଗରେ ଯାଉଥିଲେ ଚମ୍ପତିମୁଣ୍ଡା ଗାଁର ଶ୍ରୀ ଜଗବନ୍ଧୁ ନାଏକ ଓ ଶ୍ରୀ ସୁଦର୍ଶନ ସାହୁ । କଣ୍ଟା ଝଣ୍ଟା ଆଡ଼େଇ ଆଡ଼େଇ ସେମାନେ ଆଗକୁ ଆଗକୁ ମାଡ଼ି ଚାଲିଥିଲେ । ତାଙ୍କ ପରେ ଥିଲେ ଏ ତିନିଜଣ । ବାଜିରାଉତ ଛାତ୍ରାବାସର ସେତେବେଳକା ସଂପାଦକ ଶ୍ରୀ ଋଷି ବେହେରା, ବାବାଜୀ ଶ୍ରୀ ବଳଭଦ୍ର ମିଶ୍ର, ଶ୍ରୀ ଦିବାକର ପ୍ରଧାନ ମଧ ଏ ଦଳରେ ଥିଲେ । ଏ ସମସ୍ତେ ବି ଥିଲେ ସଂଗ୍ରାମୀ ଓ ଚୌଧୁରୀ ଦମ୍ପତିଙ୍କର ଘନିଷ୍ଠ ସହଯୋଗୀ ।

ଜାଗା ଖୋଜା ଯେ ଖାଲି ଅନୁଗୁଳରେ ଚାଲିଥିଲା ତାହା ନୁହେଁ। ତାଳଚେରରେ ମଧ ଚାଲିଥିଲା : ସଂଗ୍ରାମୀ- ପରେ ମନ୍ତ୍ରୀ ଶ୍ରୀଯୁକ୍ତ ମଦନ ମୋହନ ପ୍ରଧାନଙ୍କ କଳମଛୁଇଁ ଗ୍ରାମରେ। ହେଲେ ଚମ୍ପଭିମୁଣ୍ଡା ବାଜି ମାତ୍ କରିଦେଲା। ଏହା ମୂଳରେ ଦୁଇଟି ମୁଖ୍ୟ କାରଣ ଥିଲା ବୋଲି ମୁଁ ଭାବେ। ସବା ବଡ଼ କାରଣଟି ହେଲା ଚମ୍ପଭିମୁଣ୍ଡା ଥିଲା ବଡ଼କେରା ଗ୍ରାମ ପଞ୍ଚାୟତର ଗୋଟିଏ ବେଛପରୀ ଗାଁ। ଲୋକେ ସେତେବେଳେ ଏହାକୁ କଲୋନି କହୁଥିଲେ। କାରଣ ୧୦/୧୨ ଘର ପାଇଓନର ଫୋର୍ସ (Pioneer force) ପରିବାରକୁ ଅଣାଇ ଏଠାରେ ୧୦ ଏକର ଲେଖାଁ ଜାଗା ଦେଇ ଏକ ସମବାୟ ଚାଷ ଯୋଜନା ସେମାନଙ୍କୁ ବାନ୍ଧି ରଖିବାର ଯୋଗାଡ଼ ଚାଲିଥିଲା। ହେଲେ ଲୋକମାନେ ସେଥିରେ ପଶିବାକୁ ଅମଙ୍ଗ ହେଉଥିଲେ। ଶେଷସୁଦ୍ଧା ସେ ଯୋଜନା ଯୋଜନାରେ ହିଁ ରହିଗଲା। ଏପରି କୋଠଗାଁ କରିବାର ବୁଦ୍ଧିଟି ନବବାବୁଙ୍କ ମୁଣ୍ଡରୁ ହିଁ ବାହାରିଥିଲା। ସମବାୟ କଥାଟା ସେତେବେଳେ ବେଶ୍ ଚହଲ ପକାଉଥିଲା। ସେଇ ଗାଆଁରେ ଗୋଟାଏ ନୂଆ ପ୍ରକାର ସ୍କୁଲ ହୋଇ ଗ୍ରାମବାସୀଙ୍କୁ ସ୍ୱାଧୀନ ଦେଶର ଅଗ୍ରଗାମୀ ମଣିଷ ହେବାକୁ ସାହାଯ୍ୟ କରିବ, ଏହାବି ଥିଲା ତାଙ୍କର ଚିନ୍ତାଧାରା। ଶ୍ରୀମତୀ ମାଳତୀ ଚୌଧୁରୀ ମଧ ତାଙ୍କ ସ୍ୱାମୀଙ୍କର ଏହି ଚିନ୍ତାଧାରାର ସମର୍ଥକ ଥିଲେ। ସରପଞ୍ଚ ଦୁର୍ଗାଚରଣ ପୂର୍ବରୁ ସମବାୟ ବିଭାଗରେ କାମ କରି କିଛି ଅଭିଜ୍ଞତା ବି ହାସଲ କରିଥିଲେ।

ଚମ୍ପଭିମୁଣ୍ଡାର ପ୍ରାକୃତିକ ଦୃଶ୍ୟ ଥିଲା ଅତ୍ୟନ୍ତ ମନୋରମ। ପଶ୍ଚିମରେ ଡଳାଞ୍ଜନକୁ ପରାଭୂତ କରୁଥିବା ଶ୍ୟାମାସୁନ୍ଦର କଳାପାଟ ପର୍ବତ। ଉତ୍ତର-ପୂର୍ବରେ ସବୁଜ ବନାନୀଭରା ମନ୍ଦରଗିରି ପାହାଡ଼ଶ୍ରେଣୀ। ସୁଦୂର ଦକ୍ଷିଣରେ ବାଉଜର ବାଙ୍କମୁଣ୍ଡି ପର୍ବତମାଳା। ସ୍ଥାନଟିରେ ଘଟିଥିଲା ଶାଳ, ଅସନ, କୁରୁମ, ମହୁଲ ଆଦି ବିଶାଳ ଦ୍ରୁମମାନଙ୍କର ସମାହାର। ନିକଟରେ ମୁଗୁନିପଥରର ଚଟାଣକୁ ଡେଇଁ ଡେଇଁ ବହି ଯାଉଥିଲା କଳ କଳ ନାଦିନୀ ଗିରି ଝରଣାଟିଏ। (ପରେ ତା'ର ନାମ ଛାତ୍ରଛାତ୍ରୀମାନେ ଦେଇଥିଲେ 'ତମସା'।) ତା'ର ସେଇ ପଥରଶେଯରେ ସୁବାସ ଚହଟାଇ ଝରି ପଡୁଥିଲେ ଶୃଙ୍ଗାରହାର ଫୁଲମାନ। କୁଟଜ କୁସୁମର ସୁଗନ୍ଧରେ ସ୍ଥାନଟି ଆମୋଦିତ ହୋଇ ଉଠୁଥିଲା। ଫାଲ୍‌ଗୁନ ଚୈତ୍ରରେ ବସନ୍ତ ଉତ୍ସବ ରଚନା କରୁଥିଲେ ପଳାଶ ଓ ସୁନାରୀ ଫୁଲମାନେ। ଜାଗା ଠାବ କରିବା ଲୋକମାନଙ୍କ ମଧ୍ୟରେ ଶ୍ରୀମତୀ ମାଳତୀ ଚୌଧୁରୀ ଥିଲେ ପ୍ରକୃତପ୍ରଲୁବ୍ଧା ବୀଣା ବଂଶୋରୀ ବିଳାସିନୀ ସଂଗୀତ ପ୍ରବୀଣା ଜଣେ ଭାବ ବିଭୋର ମହୀୟସୀ ମହିଳା

ବିଶ୍ୱକବି ରବୀନ୍ଦ୍ରନାଥଙ୍କ କାଉଁରି ସ୍ପର୍ଶରେ ଯିଏ ଅହରହ ଶୁଣିପାରୁଥିଲା ବିଶ୍ୱପ୍ରକୃତି ଭିତରେ ବିଶ୍ୱବୀଣାର ଅନାହତ ଧ୍ୱନି । ଶାନ୍ତି ନିକେତନର ଜୀବନଧର୍ମୀ ଶିକ୍ଷାରେ ଆପଣାକୁ ଦୀକ୍ଷିତ କରାଇ ଅଳକାଶ୍ରମ ଓ ଟରିକୁନ୍ଦ କୃଷିଫାର୍ମରେ ଆପଣାକୁ ପ୍ରଶିକ୍ଷିତ ଓ ପରୀକ୍ଷିତ କରାଇ, ଗ୍ରାମାଭିମୁଖୀ ସ୍ୱାବଲମ୍ବନଶୀଳ ଶିକ୍ଷା ଭିତରେ ବିଶ୍ୱ ବିପ୍ଲବର ଆହ୍ୱାନ ଶୁଣି ପାରୁଥିବା ବ୍ୟକ୍ତି ଥିଲେ ମହାନ ସଂଗ୍ରାମୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ । ଆଉ ଥିଲେ ତାରୁଣ୍ୟର ଉଦ୍ଦାମ ଉନ୍ମାଦନା ନେଇ ଶିକ୍ଷା ଭିତରେ ଜୀବନ ଓ ଜୀବନ ଭିତରେ ଶିକ୍ଷାର ଅନୁସଂଧାନରେ ବିଶ୍ୱ ଦର୍ଶନ କରି ଫେରିଥିବା ଶ୍ରୀ ଚିତ୍ତରଞ୍ଜନ ।

ଏ ତିନିଜଣ ଯାକ ଥିଲେ ମହାତ୍ମାଗାନ୍ଧୀଙ୍କ ପ୍ରବଳ ପରାକ୍ରମୀ ସଂଗ୍ରାମୀ ସୈନିକ ଓ କବିଗୁରୁ ରବୀନ୍ଦ୍ରନାଥଙ୍କର ପରମ ପ୍ରଣତ ଏକନିଷ୍ଠ ଶିଷ୍ୟଶିଷ୍ୟା । ପ୍ରତ୍ୟେକ ଥିଲେ ପ୍ରକୃତିର ଅନନ୍ୟ ପୂଜକ । ସେଥିପାଇଁ ପ୍ରତ୍ୟେକ ପ୍ରତ୍ୟେକଙ୍କ ସ୍ୱପ୍ନକୁ ସାକାର କରିବାପାଇଁ ଚମ୍ପଭିମୁଣ୍ଡାକୁ ହିଁ ଉପଯୁକ୍ତ ସ୍ଥାନ ବୋଲି ବାଛି ନେଲେ । ଏମାନଙ୍କ ପ୍ରକୃତିପୂଜାର ସୁଯୋଗ ନେବାକୁ ସରପଞ୍ଚ ଦୁର୍ଗାଚରଣ ପଛାନ୍ତେ ବା କାହିଁକି ? ହୁଏତ ସେ ସଂଗ୍ରାମୀ ନ ଥିଲେ ମାତ୍ର ଖଦଡ଼ଧାରୀ ଥିଲେ । ଏହିସବୁ କାରଣରୁ ହିଁ କୋଇଲାଖଣିପ୍ରଦୂଷିତ କଲମଛୁଇଁ ହାରିଲା ଆଉ ଚମ୍ପଭିମୁଣ୍ଡା ଜିତିଲା । ଏହା ବ୍ୟତୀତ ବାଜିରାଉତ ଛାତ୍ରାବାସଠାରୁ ଚମ୍ପଭିମୁଣ୍ଡା ଥିଲା ସେ କାଳର ୧୦ ମାଇଲ ବାଟ । କଲମଛୁଇଁ କାହିଁ କେତେଦୂର !

କୋଠ ଗାଁ କରିବାକୁ ଚମ୍ପଭିମୁଣ୍ଡାର ଥିଲା ଗୋଟିଏ ସରକାରୀ ଘର । ପାଖରେ ଗୋଟିଏ କୂଅ ବି ଥିଲା । ଦି ବଖରା ରହିବା ଘର ସାଙ୍ଗକୁ ଗୋଟିଏ ରୋଷେଇ ଘର ବି ଥିଲା । ସେତେବେଳେ ଲୋକଙ୍କର ପାଇଖାନା ସାଙ୍ଗରେ ମୋଟେ ଦେଖା ସାକ୍ଷାତ ହୋଇ ନଥିଲା । ନାଳକୂଳ ଓ ପୋଖରୀ ହୁଡ଼ା ସାଙ୍ଗରେ ନିତି ସକାଳେ ତାଙ୍କର ମଧୁରାଳାପ ଚାଲୁଥିଲା । ଯାହା ହେଉ ଯୁବକ ଚିତ୍ତରଞ୍ଜନ ଏଇ ଘରେ ରହି ପହିଲେ ତାଙ୍କର ସ୍ୱପ୍ନର ବିଦ୍ୟାଳୟ ଆରମ୍ଭ କଲେ । ଯେତେଦୂର ମନେ ପଡ଼େ ତାଙ୍କ ସହିତ ଖଲାରି ସିନିୟର ବେସିକ୍‌ରୁ ତଥା ଓଡ଼ିଶାର ଅନ୍ୟ ସିନିୟର ବେସିକ୍‌ରୁ ପାସ୍ କରି ଆସିଥିବା ୧୭ ଜଣ ଛାତ୍ର ଆଶ୍ରମ ଜୀବନ ଆରମ୍ଭ କଲେ । ଜଣେ ଥିଲେ ଛାତ୍ରୀ । ସେ ଆଉ କେହି ନୁହେଁ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ କନିଷ୍ଠା କନ୍ୟା କୃଷ୍ଣା–ତାଙ୍କ ନାମ ତିନୁ । ତିନୁ ଆଶ୍ରମରେ ରହୁ ନଥିଲା– ରହୁଥିଲା ବଡ଼କେରା ସରପଞ୍ଚ ଦୁର୍ଗାଚରଣଙ୍କ ଘରେ ।

ତେବେ ସେ କାଳରେ ତାକୁ ଗାଁ ମାଇପିଙ୍କ କେତେ ଟାହି ଟାପରା ଶୁଣିବାକୁ ପଡୁଥିଲା । ତା ବୋପା ମାଙ୍କୁ ବି କେହି ଛାଡୁ ନ ଥିଲେ । ପାହାଡରେ ବାଡ଼େଇ ହୋଇ ପ୍ରତିଧ୍ୱନି ଆତ୍ମହତ୍ୟା କଲାପରି ସବୁ ଉଘାଣ କୁଆଡ଼େ ମିଳେଇ ଯାଉଥିଲା ।

ହଁ, ସ୍କୁଲ ଚାଲିଲା । ସରକାରୀ କାଗଜ ପତ୍ରରେ ନାଁ ଥିଲା ''ପୋଷ୍ଟ ବେସିକ୍ ସ୍କୁଲ ।'' ଓଡ଼ିଆରେ ଉତ୍ତର ମୌଳିକ ବା ଉତ୍ତର ବୁନିଆଦୀ ବିଦ୍ୟାଳୟ । କିନ୍ତୁ ଏ ନାଁ ଗୁଡ଼ିକ ସବୁଦିନ ପାଇଁ ସେଇ ସରକାରୀ କାଗଜ ପତ୍ରରେ ରହିଗଲା । ଲୋକେ ସ୍କୁଲଟିକୁ କହନ୍ତି 'ଆଶ୍ରମ' ବା 'ମାଳତୀ ଆଶ୍ରମ' । ପିଲାଏ କହନ୍ତି 'ଜୀବନ ବିଦ୍ୟାଳୟ' ଅଥବା 'ଜଙ୍ଗଲ ସ୍କୁଲ ।' (ଚିତ୍ତଭାଇଙ୍କର ଏଇ ଦୁଇ ନାଁରେ ଦୁଇଟି ବହି ପରେ ପ୍ରକାଶିତ ହେଲା ।) ଜାତକ ନାଁ ଜାତକରେ ରହିଲା, ଆଉ ଶ୍ରଦ୍ଧାନାମଟି ଚାରିଆଡ଼େ ପ୍ରଖ୍ୟାତ ହୋଇଗଲା ।

ହଜାର ହଜାର ବର୍ଷ ଧରି ଏ ଦେଶରେ ବିନା ସ୍କୁଲ ଘରରେ ପାଠ ପଢ଼ାପଢ଼ି ଚାଲିଥିଲା । ଚିତ୍ତଭାଇ ତ ଶାନ୍ତିନିକେତନର ଛାତ୍ର ଥିଲେ । ସତ୍ୟବାଦୀ ବନ ବିଦ୍ୟାଳୟ କଥା ଜାଣିଥିଲେ । ଅଳକାଶ୍ରମ କଥା ଜାଣିଥିଲେ । ପ୍ରାଚୀନ ଶିକ୍ଷା, ସାହିତ୍ୟ ଓ ଦର୍ଶନରେ ସେ କେତେ ଯେ ରମିଥିଲେ ତାହା କହି ହେବ ନାହିଁ । ତେଣୁ ପାଠ ପଢ଼ାଇବା ପାଇଁ ଚାରିକାନ୍ଥଦିଆ ଘର ନ ଥିବା ତାଙ୍କ ପାଇଁ କୌଣସି ଅଡୁଆ ସୃଷ୍ଟି କରି ନ ଥିଲା । ସେ ଓ ଛାତ୍ରମାନେ ରହୁଥିବା ଘର ପୂର୍ବ ଦିଗକୁ ଗୋଟିଏ ମହୁଲ ଗଛ ଥିଲା । ତାରି ମୂଳରେ ଆଚାର୍ଯ୍ୟ ଚିତ୍ତରଂଜନ ପତ୍ରାସନ ବା ତୃଣାସନରେ ଉପବେଶନ କରୁଥିଲେ । ତାଙ୍କର ତିନି ଦିଗରେ ସହୃଦୟ ଛାତ୍ରମାନେ ଅର୍ଦ୍ଧଚକ୍ରାକାରରେ ସେଇ ପତ୍ର ବା ତୃଣାସନରେ ବସି ପଢୁଥିଲେ । ତେଣିକି ଅଧ୍ୟୟନ ଅଧ୍ୟାପନା ଚାଲୁଥିଲା । ଦରକାର ବେଳେ ମହୁଲ ଗଛ ଗଣ୍ଡିରେ ଫିରିକ ମାରି କଳାପଟା ଟାଙ୍ଗି ଦିଆ ଯାଉଥିଲା । ଚିତ୍ତରଂଜନ ତନ୍ମୟ ହୋଇ ବିଦ୍ୟାଦାନ କରୁଥିଲେ । ଛାତ୍ରଛାତ୍ରୀମାନେ ତଦ୍‌ଗତ ଚିତ୍ତରେ ବିଦ୍ୟାଗ୍ରହଣ କରୁଥିଲେ । ପିଅନ ରହି କେହି ପିରିୟଡ଼ ଘଣ୍ଟା ବଜାଉ ନ ଥିଲେ । ଶ୍ରେଣୀପାଠ ପାଇଁ ମୁଦ୍ଦମରା ବହି କିଛି ନ ଥିଲା । ବହମାନ କାଳ ବହି ଯାଉଥିଲା । ଗୁରୁ ଶିଷ୍ୟ ଉଭୟେ କ୍ଳାନ୍ତ ହୋଇଗଲେ ଆପେ ଆପେ ବିଦ୍ୟାଦାନ ବନ୍ଦ ହୋଇ ଯାଉଥିଲା । ତା ପରେ ଚାଲୁଥିଲା ନୂଆ ବସ୍ତି ପାଇଁ ଜଙ୍ଗଲ ସଫାଇ । ରୋଷେଇ ପାଇଁ କାଠ ସଂଗ୍ରହ, ଖେଳ କସରତ, ସ୍ୱାଧ୍ୟାୟ, ଚିତ୍ରାଙ୍କନ ଡାଏରୀ ଲେଖା ବା ସୃଜନଶୀଳ ସାହିତ୍ୟ ଲେଖା ଆଦି । ପ୍ରଭାତରେ ପ୍ରଭାତ

ପ୍ରାର୍ଥନା ଓ ସଂଧ୍ୟାରେ ସଂଧ୍ୟା ପ୍ରାର୍ଥନା ଆପଣା ଆପଣାର ପ୍ରଦୀପଟି ଜାଳି ରଖିବାକୁ ଅନୁପ୍ରେରିତ କରୁଥିଲା । ଚାଲୁଥିଲା ନିୟମିତ ସୂତ୍ର-ଯଜ୍ଞ । ପ୍ରତିଦିନ ପ୍ରାର୍ଥନା ପୂର୍ବରୁ ଚିତ୍ତଭାଇ କିଛି ଲେଖି ପିଲାମାନଙ୍କୁ ଶୁଣାଉଥିଲେ । ଆଜି ଲୋକେ ଯାହାକୁ 'ରୋହିତର ଡାଏରୀ' ନାଁରେ ଜାଣନ୍ତି ପିଲାଏ ସେଇ ଲେଖାଗୁଡ଼ିକୁ କହୁଥିଲେ 'ଖୋଇ' । 'ଖୋଇ' ଶବ୍ଦଟି ବେଶ୍ ଗାଉଁଲି । ଅକାଳେ ନୁହେଁ କି ସକାଳେ ନୁହେଁ, ସବୁଦିନେ: ଖରା ବର୍ଷା ଶୀତ କାକରରେ ତା'ର ଛାଡ଼ ବାଡ଼ ନ ଥିଲା । ମହାଦେବଙ୍କ ଉପରେ ବେଲ ପତର ସବୁଦିନେ ଚଢ଼ିଲା ପରି ସବୁଦିନେ ପ୍ରାର୍ଥନାରେ ଏହା ଚିତ୍ତଭାଇ ପଢୁଥିବାରୁ ପିଲାମାନେ ଏହାକୁ ଚିତ୍ତଭାଇଙ୍କର ଗୋଟାଏ 'ଖୋଇ' ବୋଲି ଥଟ୍ଟା କରୁଥିଲେ । ସେତେବେଳେ ପିଲାମାନେ ସେପରି କହି ଠିକ୍ କରୁଥିଲେ କି ଭୁଲ କରୁଥିଲେ ସେ କଥା ହୁଏତ ଏବେ ବୁଝିବେଣି ।

ଏପରି ଲେଖାଲେଖି କରିବାର ଅଭ୍ୟାସ ତାଙ୍କର ବୋଧହୁଏ ଜେଲରେ ବା ଶାନ୍ତିନିକେତନରେ ଆରମ୍ଭ ହୋଇଥିଲା । ମୁଁ ଯେତେବେଳେ ଅଷ୍ଟମ କି ନବମ ଶ୍ରେଣୀରେ ପଢୁଥିଲି ସେତେବେଳେ ତାଙ୍କର ପ୍ରଥମ ଡାଇରୀଟି ପଢ଼ିବାର ସୌଭାଗ୍ୟ ମିଳିଥିଲା । ସେତେବେଳେ ଚିତ୍ତଭାଇ ଶାନ୍ତିନିକେତନର ଛାତ୍ର ଥିଲେ । ସେ ମୋ ଭିତରେ ଡାଇରୀ ଲେଖିବାର ଆଗ୍ରହ ସୃଷ୍ଟି କରାଇଥିଲେ । ଏଇଥିପାଇଁ ବୋଧହୁଏ ତାଙ୍କର ପ୍ରଥମ ଡାଇରୀ ସେ ମୋତେ ପଢ଼ି ଶୁଣାଇଥିଲେ । ପଢ଼ିବାକୁ ଦେଇଥିଲେ । ଚିତ୍ତଭାଇଙ୍କ ଡାଇରୀ ଲେଖା ଆଜିଯାଏ ବନ୍ଦ ହୋଇନାହିଁ । ମହାଦେବଙ୍କ ଅଭିଷେକ କଳସୀରୁ ଜଳବିନ୍ଦୁ ଅବିରତ ଝରିଲା ପରି ତାଙ୍କ ଡାଇରୀ ଲେଖା ଅନବରତ ଝରି ଚାଲିଚି ।

ଚିତ୍ତଭାଇ ସେଇ ଲେଖା ଗୁଡ଼ିକରେ ଆପଣାକୁ ଖାଲି ପ୍ରକାଶିତ କରନ୍ତି ନାହିଁ, ଆପଣାକୁ ବିକଶିତ ବି କରନ୍ତି ; ସହସ୍ରଦଳ ପଦ୍ମ ପ୍ରଭାତର ପ୍ରଥମ କିରଣର ଅମୃତ ଚୁମ୍ବନ ଲାଭ କରି ମୁକୁଳିତ ହୋଇଗଲା ପରି ଚିତ୍ତଭାଇ ସେଇ ଲେଖାଗୁଡ଼ିକ ଭିତରେ ଆପଣାର ପ୍ରମତ୍ତ ଆନନ୍ଦର ଆତ୍ମଗୁଞ୍ଜନ ଶୁଣି ଶୁଣି ଆପଣାକୁ ମୁକୁଳିତ କରନ୍ତି । ସେଇ ଲେଖା ଭିତରେ ସେ ମହକନ୍ତି ଓ ଚହଟନ୍ତି । ଅନ୍ୟକୁ ମହକାନ୍ତି ଓ ଚହଟାନ୍ତି । ଆଖିରେ ଆଖିଏ ସ୍ୱପ୍ନ ନେଇ ଉଛୁଳି ଉଠୁଥିବା ମୋର ସେଇ କୈଶୋର ଜୀବନର ସ୍ମୃତିରେଖାଗୁଡ଼ିକ ଏବେ ବି ମତେ ଉଲ୍ଲସିତ କରନ୍ତି । ଚିତ୍ତଭାଇଙ୍କ ସୁଠାମ ସୁନ୍ଦର ଅକ୍ଷରଗୁଡ଼ିକ ଭିତରେ ତାଙ୍କ ଜୀବନର ସରଳ ସରସ ଅନୁଭୂତି ଗୁଡ଼ିକ ଆଶ୍ୱିନର କାଶ-କୁସୁମ ପରି ହସି ଉଠେ । ନିର୍ଭୁଲ

ନିରୋଳା ଧାଡ଼ିଗୁଡ଼ିକ ଭିତରେ ମୁଁ ଅନୁଭବ କରେ ଚିତ୍ତଭାଇ ସତେ ଯେପରି ହସି ହସି ମୋ ସହିତ କଥା କହୁଛନ୍ତି ।

ଜୀବନ ବିଦ୍ୟାଳୟ ସଂରଚନା ପୂର୍ବରୁ ଚିତ୍ତଭାଇ ଡେନ୍‌ମାର୍କରେ ଥିଲେ । ଡେନ୍‌ମାର୍କରେ ତାଙ୍କର ସେ ଖୋଇ ଥିଲା, ସେ ନିୟମିତ ଡାଇରୀ ଲେଖିଥିଲେ । ଡେନ୍‌ମାର୍କରେ ସେ କେତେ ସ୍କୁଲ ଦେଖିଥିଲେ । କେତେ ଶିକ୍ଷକ ଓ ପିଲାମାନଙ୍କ ସହିତ ମିଶିଥିଲେ । କେତେ ଶିକ୍ଷାବିତ୍, ଭାଷାବିତ୍, କବି, ଔପନ୍ୟାସିକ,ଦାର୍ଶନିକଙ୍କ ସହିତ ଆଳାପ ଆଲୋଚନା କରିଥିଲେ । କେତେ ଦୃଶ୍ୟ ଦେଖି ଆତ୍ମହରା ହୋଇଥିଲେ । ଡେନ୍‌ମାର୍କ ରହଣିର ସମଗ୍ର ବିବରଣୀ ସେ ଲିପିବଦ୍ଧ କରିଥିଲେ । ସେଇ ଡାଇରୀଟି ସେ ତାଙ୍କର ବ୍ୟାଗ୍‌ରେ ଆଣିଥିଲେ ଚମ୍ପଭିମୁଣ୍ଡା । ଚିତ୍ତଭାଇ ଚମ୍ପଭିମୁଣ୍ଡାରେ ରହୁଥିଲାବେଳେ ମୁଁ ବାଜିରାଉତ ଛାତ୍ରାବାସରେ ରହୁଥିଲି । ଆମ ଭିତରେ ଗୋଟିଏ ଅଲିଖିତ କଥା ଥିଲା ଯେ ଆମେ ଏକାଠି ରହି ଶିକ୍ଷା କ୍ଷେତ୍ରରେ ଦେଶ ପାଇଁ କିଛି କାମ କରିବୁ । ସେଥିପାଇଁ ମୁଁ ପ୍ରତ୍ୟେକ ସପ୍ତାହରେ ପ୍ରାୟ ଚମ୍ପଭିମୁଣ୍ଡା ଯାଉଥିଲି । ଚିତ୍ତଭାଇ ତ ସହଜେ ପ୍ରତ୍ୟେକ ସପ୍ତାହରେ ବାଜିରାଉତ ଛାତ୍ରାବାସକୁ ଆସୁଥିଲେ ।

ଚିତ୍ତଭାଇ ବାପି (ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ) ଓ ନୁମା (ଶ୍ରୀମତୀ ମାଳତୀ ଚୌଧୁରୀ)ଙ୍କର ସେତେବେଳେ ଆଦରର ଧନ ଥିଲେ । ସେଥିପାଇଁ ପ୍ରତ୍ୟେକ କଥାରେ ତାଙ୍କୁ ଲୋଡ଼ା ଯାଉଥିଲା । ଉତ୍କଳ ନବଜୀବନ ମଣ୍ଡଳରେ କ'ଣ ହେବ, ବାଜିରାଉତ ଛାତ୍ରାବାସରେ କଣ ହେବ କି ଚମ୍ପଭିମୁଣ୍ଡା ଜୀବନ ବିଦ୍ୟାଳୟରେ କ'ଣ ହେବ ସବୁକଥା ଚିତ୍ତଭାଇଙ୍କୁ ହିଁ ପଚରାଯାଇ ସ୍ଥିର କରାଯାଉଥିଲା । ଗାଁ ଗହଳରେ ପିଲାମାନଙ୍କୁ ନେଇ ବି କାମ କରାଯାଇ ପାରିବ, ତାହା ମଧ ମୋଟାମୋଟି ଚିତ୍ତଭାଇ ସ୍ଥିର କରୁଥିଲେ ।

ପ୍ରତି ଶୁକ୍ରବାର ଦିନ ବାଜିରାଉତ ଛାତ୍ରାବାସ ପାଖ ଖଲାରି ଗାଁରେ ସଂଧ୍ୟା ପ୍ରାର୍ଥନା ସଭା ବସେ । ଉତ୍କଳ ନବଜୀବନ ମଣ୍ଡଳ ମହିଳା ଶିବିରର ସବୁ ଝିଅ ପବିତ୍ରାଅପାଙ୍କ ସହିତ ଖଲାରି ଗାଁକୁ ଯାଆନ୍ତି । ବାଜିରାଉତ ଛାତ୍ରାବାସରୁ ସବୁ ପୁଅଝିଅ ସର୍ବେଶ୍ୱର ଗୁରୁଜୀ, ଶଶୀରେଖା ଅପା ହେରିକାଙ୍କ ସହିତ ବି ଖଲାରି ଗାଁକୁ ଯାଆନ୍ତି । ବାପି, ନୁମା, ବଡ଼ ଗୁରୁଜୀ (ଶ୍ରୀଯୁକ୍ତ ଋଷି ବେହେରା), ଗୋଲକଭାଇ ଆଦି ଆମେ ସମସ୍ତେ ସେ ଗାଁକୁ ଯାଉ । ଚିତ୍ତଭାଇ ପ୍ରତ୍ୟେକ ଶୁକ୍ରବାର ଛାତ୍ରାବାସକୁ ଆସି ସେଠାରୁ ଖଲାରି ଯାଇ ପ୍ରାର୍ଥନା ସଭାରେ ଯୋଗ

ଦିଅନ୍ତି ।

ସେଦିନ ବି ଥିଲା ଶୁକ୍ରବାର । ତା ପୂର୍ବରୁ ମୁଁ ଚମ୍ପତିମୁଣ୍ଡା ଯାଇଥିଲି । ସେତେବେଳକୁ 'ଏଗାର ବଖରା' ଓ 'ତିନି ବଖରା' ଘର ତିଆରି ସରିଥାଏ । ଏଇ ତିନି ବଖରା ଘର ଇଟା ଚୂନ ସିମେଣ୍ଟର ଘର ଥିଲା । ଏଥିରୁ ଗୋଟିଏ ବଖରାରେ ପାଠାଗାର ଥିଲା । ଏଇ ପାଠାଗାର ବା ଲାଇବ୍ରେରୀ ମୋହରେ ମୁଁ ପଡ଼ି ଯାଇଥିଲି । ସେଥିପାଇଁ ସୁବିଧା ମିଳିଲେ ଚମ୍ପତିମୁଣ୍ଡା ଚାଲି ଯାଉଥିଲି । ଚିତ୍ତଭାଇ କହିଲେ, ଆଜି ସାଙ୍ଗ ହୋଇ ଛାତ୍ରାବାସ ଯିବା । ମୁଁ ହଁ କଲି । ବାହାରିଲି । ଗୋଟିଏ ରାଲେ ସାଇକେଲ ପଛରେ ମୁଁ ଚିତ୍ତଭାଇଙ୍କ ବ୍ୟାଗ୍ ଧରି ବସିଲି ଆଉ ଚିତ୍ତଭାଇ ସାଇକେଲ୍ ଚଲାଇଲେ । ଚମ୍ପତିମୁଣ୍ଡାରୁ ଅନୁଗୁଳ ବାଜିରାଉତ ଛାତ୍ରାବାସକୁ ଆସିବା ବେଳେ ପ୍ରାୟ ଚାରି ମାଇଲ ବାଟ ଗଡାଣି ପଡ଼େ । ତେଣୁ ଶୀଘ୍ର ଆସି ହୁଏ । ତଥାପି ସେଦିନ ଟିକିଏ ବିଳମ୍ବ ହୋଇଗଲା । ସେଥିପାଇଁ ଛାତ୍ରାବାସ ଭିତରକୁ ନ ପଶି ଆମେ ସିଧା 'ଅଜା କୁଟୀର' କୁ ଚାଲିଗଲୁ । (ଏ ଅଜା କୁଟୀରଟି ବିପ୍ଳବୀ ସାମ୍ୟବାଦୀ ସାରଙ୍ଗଧର ଦାସଙ୍କ ନାମରେ ଉତ୍ସର୍ଗିତ । ସାରଙ୍ଗଧର ଦାସ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କର ସହଯୋଦ୍ଧା ଥିଲେ । ଲୋକସଭା ଯିବା ପୂର୍ବରୁ ସେ ବାଜିରାଉତ ଛାତ୍ରାବାସରେ ହିଁ ରହୁଥିଲେ । ସେ ବୟସ୍କ ହୋଇ ଯାଇଥିବାରୁ ପିଲାମାନେ ତାଙ୍କୁ 'ଅଜା' ଡାକୁଥିଲେ । ତେଣୁ ସେ ରହୁଥିବା ଘରଟି 'ଅଜା କୁଟୀର' ହୋଇ ଯାଇଥିଲା ।) ଅଜା କୁଟୀରରେ ଦୁଇଟି ବଖରା । ଗୋଟିଏ ବଖରାର ମୁହଁ ଦକ୍ଷିଣକୁ ଓ ଗୋଟିକର ଉତ୍ତରକୁ । ଦକ୍ଷିଣ ମୁହଁ ପଶ୍ଚିମପଟ ଘରେ ଚିତ୍ତଭାଇ ରହନ୍ତି । ପ୍ରାର୍ଥନା ସମୟ ଗଡ଼ି ଯାଉଥିବାରୁ ଚିତ୍ତଭାଇ ମତେ କହିଲେ 'ବ୍ୟାଗ୍‌ଟା ଘରେ ଥୋଇ ଦେଇ ତୁ ପଛରେ ଆସୁଥା, ମୁଁ ସାଇକେଲରେ ଆଗ ପଳାଉଚି ।' ଚିତ୍ତଭାଇ ଚାଲିଗଲେ । ମୁଁ ବି ତରତର ହୋଇ ବ୍ୟାଗ୍ ଘରେ ଥୋଇ ଦେଇ ଖଲାରି ପଳାଇଲି । ସେତେବେଳେ ଆମ୍ଭମାନଙ୍କର କୌଣସି ଘରେ ତାଲା ପଡୁ ନଥିଲା । ଏହା ୧୯୫୪/୫୫ର କଥା ।

ଫେରିଆସି ଚିତ୍ତଭାଇ ଯେତେବେଳେ ତାଙ୍କ ବ୍ୟାଗ୍ ଖୋଜନ୍ତି ତା' ପାଇଲେ ନାହିଁ । ମତେ ପଚାରିଲେ, ମୁଁ ତ' ଆବାକାବା ହୋଇଗଲି । ଯୋଉ ଜାଗାରେ ବ୍ୟାଗ୍‌ଟି ରଖିଥିଲି ସେ ଜାଗା ଚିତ୍ତଭାଇଙ୍କୁ ଦେଖାଇଲି । ଚିତ୍ତଭାଇଙ୍କ ଘରେ ସେତେବେଳକୁ ଖାଉତେ ମଣିଷ ଜମା ହୋଇଗଲେଣି । ସମସ୍ତେ ନିଜ ନିଜର

ଅକଲ ଅନୁସାରେ କିଏ ବ୍ୟାଗ୍‌ଟା ନେଇଥିବ ବୋଲି ପତା ଲଗାଉ ଥାଆନ୍ତି । ଗୋଲକ ଭାଇ ଓ ବଡ଼ ବଡ଼ ପିଲାମାନେ ଛାତ୍ରାବାସରେ ଅନ୍ଦି କନ୍ଦି ଖୋଜି ଋଲେଣି । ବିଜୁଳି ଆଲୁଅ ତ ନଥାଏ । ଟର୍ଚ୍ଚ ଓ ଲଣ୍ଠନ ଆଲୁଅ ଖାଲି ସାହାରା । ଶେଷବେଳକୁ ସମସ୍ତେ ନିରାଶ ହେଲେ । ବ୍ୟାଗ୍‌ଟି ମିଳିଲା ନାହିଁ । ମୋ ମୁହଁରେ ତ ପାଣି ମରି ଯାଉଥାଏ । ଚିତ୍ତଭାଇ ମତେ ଖାଲି ଆଶ୍ୱାସନା ଦେଉଥାଆନ୍ତି, ବ୍ୟାଗ୍ ମିଳିଯିବ । ବ୍ୟସ୍ତ ହ'ନା । ନିଜ ମନର ବେଦନାକୁ ଏଇଆ କହି ହୁଏତ ସେ ନିଜକୁ ବି ପ୍ରବୋଧନା ଦେଉ ଥାଆନ୍ତି ।

ରାତି ପାହିଲା । ଖୁବ୍ ଖୋଜାଖୋଜି ତଥାପି ଚାଲିଥାଏ । ନୁମା ଓ ବାପି ବି ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ । ଆଶ୍ରମକୁ କେବେ ପୁଲିସକୁ ଡକାଯାଏ ନାହିଁ । ଏଥର କିନ୍ତୁ ଡକାଗଲା । ପୁଲିସ୍ ବି ଆସିଲେ । ମତେ ସନ୍ଦେହ କଲେ ବୋଲି ପ୍ରାୟ ଦୁଇବର୍ଷ ପରେ ପହିଲେ ନୁମା ଓ ପରେ ଚିତ୍ତଭାଇଙ୍କଠାରୁ ଶୁଣି ମୁଁ ହତଭମ୍ବ ହୋଇ ଯାଇଥିଲି । ସେତେବେଳେ ପୁଲିସ ମତେ ଖୁବ୍ ପଚରାଉଚରା କଲେ । ଯେତେବେଳେ ସେମାନେ ମତେ ସନ୍ଦେହ କଲେ ସେତେବେଳେ ଚିତ୍ତଭାଇ, ନୁମା ଓ ବାପି ପୁଲିସକୁ ଆଉ ଅନୁସନ୍ଧାନ ନ କରି ଫେରିଯିବାକୁ କହିଲେ । ପୁଲିସ ଚାଲିଗଲେ ।

ଏତେକଥା ଏଇଥିପାଇଁ କହିଲି ଯେ ଏଇ ବ୍ୟାଗ୍ ସହିତ ଚିତ୍ତଭାଇଙ୍କ ଡେନ୍‌ମାର୍କ ଡାଇରୀ- ଚିତ୍ତଭାଇଙ୍କ ଅନନ୍ୟ ମାନସ ସନ୍ତାନଟି ବି ଚାଲିଗଲା । ଚାଲିଗଲା ସବୁଦିନ ପାଇଁ । ଗୋଟିଏ ମୁହୂର୍ତ୍ତରେ ସବୁ ଶେଷ ହୋଇଗଲା । ହଜାରେ ସ୍ୱପ୍ନ କ୍ଷଣକରେ ମିଳେଇ ଗଲା । ଯିଏ ଗଲା ସେ ଆଉ ବାହୁଡ଼ିଲା ନାହିଁ । ଗଲା ପୁତ୍ର ବାହୁଡ଼ି ନଇଲା ଲୋ, କୋଇଲି । ଯଶୋଦା ଝୁରୁଥିଲେ, ଆଖିରୁ ଲୁହ ଗଡ଼ାଉଥିଲେ । ଚିତ୍ତଭାଇ ଲୁହ ଗଡ଼ାନ୍ତି କି ଖାଲି ଝୁରନ୍ତି ମୁଁ କହି ପାରିବି ନାହିଁ । କିନ୍ତୁ ମୁଁ ଝୁରେ ଆଉ ଆଖିରୁ ଲୁହ ଗଡ଼ାଏ ।

*ଜୟନାରାୟଣ ଦାସ*

*ଅଧ୍ୟକ୍ଷ, କର୍ମଯୋଗୀ ମାଧବଚନ୍ଦ୍ର ଦାସ ମେମୋରିଆଲ୍ ଟ୍ରଷ୍ଟ*

*ମଙ୍ଗୁଳି, ଜଗତସିଂହପୁର*

# ବିପ୍ଳବୀ ବନ୍ଧୁ

୧୯୮୪ ମସିହା ଜୁନ୍ ମାସ ପ୍ରାୟ ଶେଷ ସପ୍ତାହରେ ଚିତ୍ତଭାଇଙ୍କୁ ମୁଁ ତାଙ୍କ ବାସଭବନରେ ପ୍ରଥମ ଥର ପାଇଁ ଏକାକୀ ସାକ୍ଷାତ କରିଥିଲି । କୌଣସି ପୂର୍ବସୂଚନା ନ ଦେଇ ଘରୁ (ବାଲେଶ୍ୱର) ବଲାଙ୍ଗିର ଯିବା ବାଟରେ ମୁଁ ହଠାତ୍ ପହଞ୍ଚିଥିଲେ ବି ସେ କୌଣସି ଅପ୍ରସ୍ତୁତି ବା କୁଣ୍ଠା ଅନୁଭବ କରି ନ ଥିଲେ ।

ତାଙ୍କୁ ମୋର ସାକ୍ଷାତ କରିବାର ଉଦ୍ଦେଶ୍ୟ ଥିଲା ·ଓଡ଼ିଶାରେ ଶ୍ରୀମା-ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ହେଉଥିବା କାର୍ଯ୍ୟର ରୂପରେଖ ଓ ଏହାର ଭବିଷ୍ୟତ ସମ୍ପର୍କରେ ଆଲୋଚନା କରିବା । ୧୯୮୩ ମସିହାରେ ଶ୍ରୀଅରବିନ୍ଦ ପାଠଚକ୍ରରେ ଯୋଗଦେବା ମାଧ୍ୟମରେ ଶ୍ରୀଅରବିନ୍ଦଙ୍କ ଯୋଗ ଆଡ଼କୁ ମୁଁ ପ୍ରଥମେ ଆକର୍ଷିତ ହୋଇ ଆସିଲି ଓ ବିଭିନ୍ନ ଅବସରରେ ଶିବିର ଓ ସମ୍ମିଳନୀମାନଙ୍କରେ ଯୋଗ ଦେଲି । ଇତ୍ୟବସରରେ ଶ୍ରୀଅରବିନ୍ଦଙ୍କ ଯୋଗସମନ୍ୱୟ ଗ୍ରନ୍ଥଟିକୁ ମୁଁ ଅଧ୍ୟୟନ କରି ତାଙ୍କର ଆଦର୍ଶର ସୁଦୂର ଦୃଷ୍ଟି ଓ ବ୍ୟାପକତାକୁ କିଞ୍ଚିତ୍ ପରିମାଣରେ ନିଜ ବୁଦ୍ଧିରେ ବୁଝିଥାଏ ଓ ଏହାକୁ କିଭଳି ଏଠାରେ ପ୍ରୟୋଗ କରାଯାଉଛି ତାହା ବୁଝିବାକୁ ଚେଷ୍ଟା କରୁଥାଏ । ଲକ୍ଷ୍ୟକଲି- ଓଡ଼ିଶା ଭଳି ଏକ ରାଜ୍ୟରେ ଏହି କାର୍ଯ୍ୟର ବିସ୍ତୃତି ଯେତେ, କର୍ମୀ ସେତେ ପରିମାଣରେ ନାହାନ୍ତି । ଅନ୍ୟ ପକ୍ଷରେ ସ୍ଥାନୀୟ କର୍ମୀମାନେ ଏଥିପାଇଁ କିପରି ଯୋଗ୍ୟ ହୋଇ ଉଠିବେ ସେପରି କୌଣସି ସାଙ୍ଗଠନିକ ପ୍ରଚେଷ୍ଟା ମଧ୍ୟ ନାହିଁ, ଯାହା ଫଳରେ ସେମାନେ ସବୁବେଳେ ବାହାର ଅଞ୍ଚଳର କର୍ମୀଙ୍କ ଉପରେ ନିର୍ଭର କରୁଛନ୍ତି । ତା'ଛଡ଼ା ସେମାନେ ବା ଆସି କରୁଛନ୍ତି କ'ଣ ? ଭାଷଣ । ବେଳେ ବେଳେ ଭାଷଣ ଦେବା ସମୟରେ ସେମାନେ ନିଜକୁ ଅତ୍ୟଧିକ ଜାହିର କରୁଛନ୍ତି । ସାଧାରଣ ଲୋକମାନେ ସରଳ ବିଶ୍ୱାସରେ ତାଙ୍କୁ ମା'ଙ୍କର ପ୍ରତିନିଧି ବୋଲି ମାନିନେଉଛନ୍ତି । ଏମାନେ ଏତେ ବ୍ୟସ୍ତ ଯେ ବର୍ଷରେ ଥରେ ତ ଦୂରର କଥା ଦୁଇବର୍ଷରେ ଥରେ ବି ଏମାନଙ୍କୁ ପାଇବା କଠିନ ଓ ବ୍ୟୟବହୁଳ । ମନେ ମନେ ମୁଁ ତେଣୁ ଭାବୁଥାଏ ଏଭଳି ଅବସ୍ଥାରେ କାର୍ଯ୍ୟ

ଚାଲିବ କେମିତି ? ଆମେମାନେ ଯୋଗ୍ୟ ହେବୁ ନାହିଁ କାହିଁକି ? ଆମମାନଙ୍କୁ ପଥ ଦେଖାଇବ କିଏ ? ପୂର୍ବରୁ ଚିତ୍ତଭାଇଙ୍କ ଶ୍ରମ ଶିବିର କଥା ଶୁଣିଥିଲି । ମୋର ବିଶ୍ୱାସ ହେଲା, ଏଥିରେ ଚିତ୍ତଭାଇ ସାହାଯ୍ୟ କରିପାରିବେ । 'ନବଜ୍ୟୋତି' ପତ୍ରିକାରୁ ତାଙ୍କର ବିପ୍ଳବାତ୍ମକ ଲେଖାସବୁକୁ ମୁଁ ନିୟମିତ ପଢ଼ୁଥିଲି । କିନ୍ତୁ ମୋ ପାଇଁ ବିଶେଷ ଆକର୍ଷଣର ବିଷୟ ଥିଲା ଶ୍ରୀଅରବିନ୍ଦଙ୍କ ଗ୍ରନ୍ଥର ଅଧ୍ୟୟନ । ମୁଁ ତାହାହିଁ ଚାହୁଁଥିଲି । ଆମେମାନେ ଆଗେଇ ନ ପାରିବାର କାରଣ ହେଲା ଶ୍ରୀଅରବିନ୍ଦଙ୍କ ଦର୍ଶନ ବିଷୟରେ ଜ୍ଞାନର ଅଭାବ । ଏଣୁ ମୁଁ ସେଇ ଦିନରୁ ସୁଯୋଗ ଖୋଜୁଥିଲି ତାଙ୍କୁ ସାକ୍ଷାତ କରିବା ପାଇଁ । ତା'ଛଡ଼ା ଆମେମାନେ ଚେଷ୍ଟା କରୁଥିଲୁ ଗୋଟିଏ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଖୋଲିବା ପାଇଁ । ସେ ବିଷୟରେ ବି ତାଙ୍କର ପରାମର୍ଶ ଆବଶ୍ୟକ ହେଉଥିଲା ।

ଯାହା ବି ହେଉ, ଆମେ କେତେ ସମୟ କଥାବାର୍ତ୍ତା ହେଲୁ ଏବେ ମୋର ମନେ ନାହିଁ । ସେ ମୋର ସବୁକଥା ଶୁଣିଗଲେ । ଶ୍ରୀଅରବିନ୍ଦଙ୍କ ଯୋଗକୁ ଆଳ କରି ପଣ୍ଡାଗିରି ଚଳିବ ନାହିଁ ବୋଲି କହିଲେ । ତାଙ୍କର ସେଦିନର ଆହୁରି କିଛି ଶକ୍ତିପୂର୍ଣ୍ଣ ଧୀର ବାକ୍ୟ ମୋର ଆତ୍ମବିଶ୍ୱାସ ଫେରାଇ ଆଣିଥିଲା ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ଆଗେଇବା ପାଇଁ । ଶେଷରେ ସେ ମୋତେ ନିମନ୍ତ୍ରଣ ଜଣାଇଲେ ସେହିବର୍ଷ ଡ଼ିସେମ୍ବର ମାସରେ କଳାହାଣ୍ଡି ଜିଲ୍ଲାର ପଣ୍ଡକାମାଳ ଗ୍ରାମସ୍ଥିତ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ହେବାକୁ ଯାଉଥିବା ୧୦ ଦିନିଆ ଶ୍ରମ-ଶିବିରରେ ଯୋଗ ଦେବା ପାଇଁ । ଶିବିରକୁ ଗଲି ୮ ଦିନ ପାଇଁ । ତାଙ୍କ ସାହଚର୍ଯ୍ୟରେ ସେଠାରେ ସେତିକି ଦିନ ରହିବା ଭିତରେ ତାଙ୍କର ଆଦରପୂର୍ଣ୍ଣ ବ୍ୟବହାରରେ ନିଜକୁ ହଜାଇ ଦେଲି ସତ କିନ୍ତୁ ସେ ମୋର ସ୍ୱଭାବର ଦୁର୍ବଳତାଗୁଡ଼ିକୁ ଯେପରି ଅତି ନିର୍ମମ ଭାବେ ଦେଖାଇ ଦେଉଥିଲେ ସେଥିରେ ମୁଁ ବାରମ୍ବାର ପୀଡ଼ିତ ହେଉଥିଲି । ପ୍ରକୃତରେ ତାହାହିଁ ଥିଲା ତାଙ୍କର ନିଃସ୍ୱାର୍ଥ ଆତ୍ମୀୟତାର ନିଦର୍ଶନ । ନିଜକୁ ଗଢ଼ିବାପାଇଁ ଯେ ଅନେକ କିଛି କରିବାକୁ ଅଛି, ତାହା ମୁଁ ସେଠାରୁ ଅନୁଭବ କଲି ଓ କାର୍ଯ୍ୟ ମଧ୍ୟ ଆରମ୍ଭ କଲି ।

ଶିବିର ପରେ ଫେରିବା ବାଟରେ ମୋର ନିମନ୍ତ୍ରଣ ରକ୍ଷାକରି ସେ ସେହି ବଲାଙ୍ଗିର ଜିଲ୍ଲାର (ମୋର ଚାକିରି ସ୍ଥାନ) ଏକ ଉପାନ୍ତ ଅଞ୍ଚଳ (ଶାନ୍ତିପୁର)କୁ ଦିନଟିଏ ପାଇଁ ଆସିଥିଲେ ମୋ ଘରେ ଜଣେ ଦୁର୍ଲଭ ଅତିଥି ହୋଇ । ତାଙ୍କର ଉପସ୍ଥିତିରେ ଆମ ବାତାବରଣରେ ଭ୍ରାତୃତ୍ୱ, ଐକ୍ୟ ଓ ଆତ୍ମବିଶ୍ୱାସର ଏକ ଶକ୍ତିପୂର୍ଣ୍ଣ

ସ୍ପନ୍ଦନ ଖେଳିଯାଇଥିବାର ଆମେ ପାଠଚକ୍ର ବନ୍ଧୁମାନେ ଅନୁଭବ କଲୁ ।

ପରବର୍ଷ ମାର୍ଚ୍ଚରେ ମୁଁ ଆଶ୍ରମ ଚାଲି ଆସିବାର ଖବର ପାଇ ସେ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । କିନ୍ତୁ ନିୟମିତ ପତ୍ର ବିନିମୟ ଚାଲିଥାଏ । ପର ପର ଦୁଇ ବର୍ଷ ଅଳ୍ପ ଦିନ ପାଇଁ ହେଲେ ବି ମୁଁ ଆଶ୍ରମରୁ ଯାଇ ଶ୍ରମ ଶିବିରରେ ଯୋଗ ଦେଇଛି । ପରେ ସେ କେତେଥର ଆଶ୍ରମକୁ ଆସିଛନ୍ତି । ଏଠାରେ ମଧ୍ୟ ଅଧ୍ୟୟନ ଶିବିର ଥରେ ହୋଇଛି । ସେ ଯେତେ ଥର ଆଶ୍ରମ ଆସନ୍ତି ସେତେଥର ଏଠାରେ ଶ୍ରୀଅରବିନ୍ଦଙ୍କ ଗ୍ରନ୍ଥ ଅଧ୍ୟୟନର ଆସରମାନ ବସେ । ତାଙ୍କର ଏଠାରେ ଲୋକପ୍ରିୟତାର ମଧ୍ୟ ତୁଳନା ନାହିଁ ।

ଚିତ୍ତଭାଇଙ୍କ ଜୀବନ-କାହାଣୀ, ବହୁମୁଖୀ ପ୍ରତିଭା, ଅଗାଧ ପାଣ୍ଡିତ୍ୟ, ନିଃଶେଷ ଆତ୍ମଦାନ ଓ ଆଦର୍ଶ ବ୍ୟକ୍ତିତ୍ୱ ବିଷୟରେ ମୁଁ ବହୁତ ପରେ ପରିଚିତ ହୋଇଥିଲି, କିନ୍ତୁ ମୋର ବିଶେଷ ପରିଚୟଟି ଥିଲା ତାଙ୍କର ବିପ୍ଳବୀ ଗୁଣଟି ସହିତ । ପିଲାଦିନେ ବାପାଙ୍କ ନିକଟରୁ ବିପ୍ଳବୀମାନଙ୍କ କାହାଣୀ ଶୁଣି ମୋ ମନରେ ଏହି ଭାବ ଆସିଥିଲା ଯେ ସୁଯୋଗ ପାଇଲେ ମୁଁ ମଧ୍ୟ ବିପ୍ଳବରେ ଯୋଗ ଦେବି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ମନେ ମନେ ବିପ୍ଳବର ସନ୍ଧାନ କରୁଥାଏ । କିନ୍ତୁ କାହିଁ ? ସବୁ ଆଡ଼େ ତ ଲୋକେ ନିଜ ନିଜ ଧନ୍ଦାରେ ବେଶ୍ ଆନନ୍ଦରେ ଅଛନ୍ତି, ନୂଆ କଥା କିଏ ଭାବୁଛି ? ପରେ ଶ୍ରୀଅରବିନ୍ଦଙ୍କଠାରୁ ଯେଉଁ ବିପ୍ଳବର ସ୍ୱର ମୁଁ ଶୁଣିବାକୁ ପାଇଲି, ତା'ର ପଥପ୍ରଦର୍ଶକ ଓ ବନ୍ଧୁ ହେଲେ ଚିତ୍ତଭାଇ ।

ଅଦ୍ୟାବଧି ତାଙ୍କର ୮୦ ବର୍ଷର ଦୀର୍ଘ ଜୀବନକୁ ପର୍ଯ୍ୟବେକ୍ଷଣ କଲେ ଜାଣିପାରିବା, ସେ ଜଣେ ଜନ୍ମଗତ ବିପ୍ଳବୀ । ଛାତ୍ର ଜୀବନରୁ ସେ ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସମସ୍ତ ସାମାଜିକ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ରହି ମାନବତାର ଆଦର୍ଶରେ ସେ ନିଜକୁ ଉଦ୍‌ବୁଦ୍ଧ କରିଛନ୍ତି ଓ ସେହି ତତ୍ତ୍ୱରେ ସାହିତ୍ୟର ବିପୁଳ ଭଣ୍ଡାର ସୃଷ୍ଟି କରିଛନ୍ତି । ଏତେ ମହାନ୍ ହୋଇ ମଧ୍ୟ ସବୁରି ଭିତରେ ଜଣେ ହେବା ପାଇଁ ବୋଧ ହୁଏ ସେ ନିଜକୁ ସମାଜର ଉଚ୍ଚ ବର୍ଗରେ ନ ରଖି ଶିକ୍ଷକର ଓ ସେବକର ଏକ ସରଳ ଜୀବନ ନେଇ ସବୁବେଳେ ସାଧାରଣ ବର୍ଗଙ୍କ ମଧ୍ୟରେ ରହି ଆସିଛନ୍ତି, ଯାହା ଫଳରେ ସେମାନଙ୍କର ବନ୍ଧୁଟିଏ ହୋଇ ପାରିବେ । ତାଙ୍କର ସାହିତ୍ୟ ପରି ଏହା ମଧ୍ୟ ଏକ ଶ୍ରେଷ୍ଠ କୃତିତ୍ୱ ଯେ ଓଡ଼ିଶାର କୋଣେ କୋଣେ ଅସଂଖ୍ୟ ନରନାରୀ ଅଛନ୍ତି ଯେଉଁମାନେ ତାଙ୍କରି

ଉପଯୁକ୍ତ ପରାମର୍ଶ, ସାହାଯ୍ୟ ଓ ସାନ୍ନିଧ୍ୟରେ ଜୀବନ ପଥରେ ଆଗେଇ ପାରିଛନ୍ତି ଓ ସେମାନେ ଏକ ନୂତନତାର ସନ୍ଧାନ ପାଇଛନ୍ତି ।

ଚିତ୍ତଭାଇ ବିଶ୍ୱର ପ୍ରାୟ ସମସ୍ତ ଶ୍ରେଷ୍ଠ ଆଦର୍ଶକୁ ଅଧ୍ୟୟନ ଓ ଅନୁଶୀଳନ କରିଛନ୍ତି; ଭାରତର ଦୁଇ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ମହାତ୍ମାଗାନ୍ଧୀ ଓ ରବୀନ୍ଦ୍ରନାଥ ଠାକୁରଙ୍କ ପ୍ରଭାବରେ ସେ ଗୋଟିଏ ସମୟରେ ଗଭୀର ଭାବେ ପ୍ରଭାବିତ ହୋଇଛନ୍ତି । କିନ୍ତୁ ଅବଶେଷରେ ସେ ଶ୍ରୀମା ଶ୍ରୀଅରବିନ୍ଦଙ୍କୁ ହିଁ ନିଜର ଜୀବନ ଉତ୍ସର୍ଗ କରିଛନ୍ତି- କାରଣ ସେ କେବଳ ଜଣେ ବିପ୍ଳବୀ ନୁହେଁ, ପ୍ରଗତିବାଦୀ ମଧ୍ୟ । ସେ ଦେଖିବାକୁ ପାଇଛନ୍ତି ଏହାରି ଭିତରେ ସବୁକିଛିର ସମନ୍ୱୟ ଘଟିଛି ଓ ଲୁଚିରହିଛି ମାନବଜାତିର ସ୍ୱର୍ଣ୍ଣିମ ଭବିଷ୍ୟତ ।

ଶିବିରରେ ବହି ପଢ଼ି ବୁଝାଇବା ବେଳେ ତାଙ୍କର ଅନେକ ଅନ୍ତର କଥା ସେ ଖୋଲି କହିଦିଅନ୍ତି । ସେଥିରୁ ମୋର ଯାହା ଏବେ ମନେପଡୁଛି ଲେଖୁଛି :

"ଅନୁବାଦ କରିବା ମାଧ୍ୟମରେ ମୁଁ ଯା ଭିତରେ ପଶିଗଲି । ପ୍ରପତ୍ତି ମୋତେ ପୂରାଇ ଦେଲେ, "The Life Divine" ଗ୍ରନ୍ଥ ଅନୁବାଦ କରିବା ପାଇଁ ମା'ଙ୍କଠାରୁ ଆଶୀର୍ବାଦ ପୁଷ୍ପ ଆଣି ପ୍ରପତ୍ତି ଦେଇଥିଲେ । ମୁଁ ତାହା ଏବେ ବି ସାଇତି ରଖିଛି । ଅନୁବାଦ ଯେ କେତେ କଠିନ, କହି ହେବ ନାହିଁ । ପ୍ରଥମ ଅଧ୍ୟାୟଟି କରିବାକୁ ୩ ମାସ ଲାଗିଲା । ଭାବୁଥିଲି ମୋ ଦ୍ୱାରା ହେବନି । ତାଙ୍କୁ (ମା'ଙ୍କୁ) ପ୍ରାର୍ଥନା କଲି । ବାଟ ଦିଶିଲା ।" ଥରେ "ଗୀତା ନିବନ୍ଧମାଳା" ପଢ଼ାଉଥିବା ବେଳେ ଭାବମୁଗ୍ଧ ହୋଇ କହିଲେ– "ମୁଁ ଜୀବନରେ କାହା ପାଖରେ ମଥାନତ କରି ନାହିଁ । ହେଲେ ଏଇଠି ନିଜକୁ ଦେଇଦେଲି ।" ଆଉ ଥରେ ଶ୍ରମଦାନ କାର୍ଯ୍ୟ ଚାଲିଥିବା ବେଳେ କହିଲେ– "ଏଇ ଅନୁବାଦହିଁ ମୋତେ ବିଦ୍ରୋହୀ କରିଦେଲା । ଶ୍ରୀଅରବିନ୍ଦ ପ୍ରକୃତରେ କ'ଣ ଚାହାନ୍ତି ଲୋକେ ତାହା ନ ପଢ଼ି ଏଣୁ ତେଣୁ କହୁଛନ୍ତି । ମୁଁ ପାଟି କରୁଛି । ନ ପଢ଼ିଥାନ୍ତି ହେଲେ, ଚୁପ୍ ରହନ୍ତି ।" ଏକଥା କହିବାର ତାତ୍ପର୍ଯ୍ୟ ହେଲା, ଓଡ଼ିଶାର ପରମ୍ପରାବାଦୀ ମାତୃପ୍ରେମୀଙ୍କଠାରେ ଚିତ୍ତଭାଇ ଜଣେ ବିଦ୍ରୋହୀ । ଏହି ପ୍ରସଙ୍ଗରେ ସେ ଥରେ କହୁଥିଲେ- "ମା କହିଛନ୍ତି- For heaven's sake do not make it a religion. ତେଣୁ, ମୁଁ ବଞ୍ଚିଥିବା ଯାଏ ଏହାକୁ ଗୋଟିଏ ଧର୍ମରେ ପରିଣତ ହେବାକୁ ଦେବିନି ।" ଥରେ ଯୋଗସମନ୍ୱୟ ପଢ଼ାଉଥିବା ବେଳେ କହିଲେ– "ଏଠାରେ ଶ୍ରୀଅରବିନ୍ଦ କହୁଛନ୍ତି Yoga is nothing but a practical psychology ? ଏଇଟାହିଁ ମୋତେ

ଭାରି ଭଲ ଲାଗିଲା । ଯୋଗ ଆଡ଼କୁ ଆକର୍ଷିତ ହେଲି । ନ ହେଲେ ମୁଁ କାହିଁକି ଯା ଭିତରକୁ ପଶିଥାନ୍ତି ?'' ସମସ୍ତେ ଜାଣନ୍ତି ସେ ଜଣେ ବିଖ୍ୟାତ ମନସ୍ତତ୍ତ୍ୱବିତ୍ ।

ଓଡ଼ିଶାରେ ଶ୍ରୀଅରବିନ୍ଦଙ୍କ କର୍ମଧାରା ପ୍ରତି ଚିତ୍ତଭାଇଙ୍କ ଅବଦାନ ଅତୁଳନୀୟ । ବିଶେଷ କରି ଅନୁବାଦ କାର୍ଯ୍ୟରେ ଶ୍ରୀଅରବିନ୍ଦଙ୍କ ମୁଖ୍ୟ ଗ୍ରନ୍ଥ କେତୋଟି, ଯଥା The Synthesis of Yoga", (ଯୋଗ ସମନ୍ୱୟ), "The Life Divine" (ଦିବ୍ୟ ଜୀବନ), "The Human Cycle" (ମାନବ ଯୁଗଚକ୍ର), "The Ideal of Human Unity" [ମାନବ ଏକତାର ଆଦର୍ଶ, (ଅପ୍ରକାଶିତ)] ତାଙ୍କରି ଅନୁବାଦ । ତା'ଛଡ଼ା, ମା'ଙ୍କର ୧୭ ଖଣ୍ଡ ଯାକ ରଚନା ସଂଗ୍ରହ ସେ ଅନୁବାଦ କରି ଓଡ଼ିଶାବାସୀଙ୍କର ଅଶେଷ କଲ୍ୟାଣ ସାଧନ କରିଛନ୍ତି ।

ତାଙ୍କୁ ସାକ୍ଷାତ କଲେ, ତାଙ୍କ ସହ କଥାବାର୍ତ୍ତା ହେଲେ ନିଜ ଭିତରେ ବଳ ଆସେ । ଅବସାଦ, ଦୁର୍ବଳତା, ସଂକୀର୍ଣ୍ଣତା ପ୍ରଭୃତି ତାଙ୍କ ସାହଚର୍ଯ୍ୟରେ ଉଭେଇଯାଏ । ଏଭଳି ଏକ ବ୍ୟକ୍ତିଙ୍କର ଜଣେ ବନ୍ଧୁ ହେବାରେ ନିଜକୁ ଗୌରବ ଲାଗେ । ଯେଉଁ ପରମ ପ୍ରଭୁ ତାଙ୍କୁ ଆଧାର କରି ଏତେ ଜ୍ଞାନ, ଶକ୍ତି, ପ୍ରେମ, ପ୍ରତିଭା, ସାଧନା ଓ ତ୍ୟାଗକୁ ସଯତ୍ନରେ ଆମମାନଙ୍କ ସାହାଯ୍ୟ ପାଇଁ ପଠାଇଛନ୍ତି ତାଙ୍କୁ ଆମର ବିନମ୍ର ପ୍ରଣାମ ଓ କୃତଜ୍ଞତା ।

*ମଧୁସୂଦନ ମହାପାତ୍ର*
*ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ*

# ସବୁରି ପ୍ରିୟ ଚିତ୍ତଭାଇ

ମୁଁ ଯେତେବେଳେ ଶାନ୍ତିନିକେତନରେ ସାମାଜିକ ଶିକ୍ଷା ସଂଗଠକ ଭାବରେ ସରକାରଙ୍କ ତରଫରୁ ଛ'ମାସିଆ ତାଲିମ ନେଉଥାଏ ସେତେବେଳେ ଚିତ୍ତଭାଇଙ୍କର ନାଁ ଶୁଣିଥିଲି । ଏହା ବୋଧହୁଏ ୧୯୬୨-୬୩ ମସିହାର ଘଟଣା । ଚିତ୍ତଭାଇଙ୍କ ଜୀବନ ବିଦ୍ୟାଳୟ ବହିଟି ମୋତେ ଏତେ ମୁଗ୍ଧ କଲା ଯେ ମୁଁ ନିଜେ ନିଜକୁ ତା' ଭିତରେ ହଜାଇ ଦେଲି । ତା'ପରେ ଚିତ୍ତଭାଇଙ୍କୁ ଏ ସ୍ଥୂଳ ନୟନରେ ଦେଖିବା ପୂର୍ବରୁ ତାଙ୍କୁ ଗୋଟାପଣେ ମୋର ଆପଣାର ବୋଲି ଭାବି ନେଇଥିଲି ।

ସେତେବେଳେ ଓଡ଼ିଶାରେ ଯେଉଁଠି ମା'ଙ୍କ କାମ ହେଉଥିଲା, ମୋତେ

କିଏ ଡ଼ାକୁ ନ ଡ଼ାକୁ କାନରେ ବାର୍ତ୍ତା ପାଇଲେ ଯାଇ ପହଞ୍ଚି ଯାଉଥିଲି । ୧୯୭୦ ଅକ୍ଟୋବରରୁ ପୂରାପୂରି ମା'ଙ୍କ କାମ ଓଡ଼ିଶାରେ କରିବାପାଇଁ ସୁଯୋଗ ମିଳିଗଲା । ''ଏ ମନ ପାଞ୍ଚୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।'' ବାବାଜୀ ମହାରାଜ (ଶ୍ରୀ ରାମକୃଷ୍ଣ ଦାସ) ଓ ପ୍ରପତ୍ତି (ଅଧ୍ୟାପକ କାଙ୍ଗାଳି ଚରଣ ପତି)ଙ୍କ ନେତୃତ୍ୱରେ ଓଡ଼ିଶାରେ ପାଠଚକ୍ର ଆନ୍ଦୋଳନ ଚାଲିଥାଏ । ସେ ସମୟରେ ଓଡ଼ିଶାର କେତେଜଣ କର୍ମୀ ପ୍ରପତ୍ତିଙ୍କ ନେତୃତ୍ୱରେ ଲାଗି ପଡ଼ିଥାଆନ୍ତି ମା'ଙ୍କ କାମରେ । ଚିତ୍ତଭାଇ ଡାଇରେକ୍ଟର ଭାବରେ ଭୁବନେଶ୍ୱର ୟୁନିଟ୍-୨ର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ କାର୍ଯ୍ୟ କରୁଥାଆନ୍ତି । ସେଇଠାରେ ତାଙ୍କ ସହିତ ମୋର ହେଲା ଦେଖାସାକ୍ଷାତ । ତା'ପରେ ଓଡ଼ିଶାର ବହୁ ଜାଗାରେ ଚିତ୍ତଭାଇଙ୍କ ସହିତ ମିଶିବାର ଓ ଏକାଠି କାମ କରିବାର ସୌଭାଗ୍ୟ ମା'ଙ୍କ କୃପାରୁ ପ୍ରାପ୍ତ ହୋଇଛି । ଥରେ ପ୍ରପତ୍ତି ମୋତେ କହିଲେ, ''ମଧୁସୂଦନ ! ତୁମେ ଚିତ୍ତଭାଇଙ୍କୁ ଜାଣିଛ ? ତାଙ୍କ ଭିତରେ ଅସାଧାରଣ ପାଣ୍ଡିତ୍ୟ ଓ ପ୍ରତିଭା ରହିଛି । ଶ୍ରୀଅରବିନ୍ଦଙ୍କର ଇଂରାଜୀ ଗ୍ରନ୍ଥ ସବୁକୁ ସେ ଗୋଟିଏ ଥରରେ ଅନୁବାଦ କରିଦେଇଛନ୍ତି । ସେ ଜଣେ ଦକ୍ଷ ସଂଗଠକ ଓ ନିରହଙ୍କାର କର୍ମୀ ।''

ଚିତ୍ତଭାଇଙ୍କ ସହିତ ତାଳିଯୋଡ଼ା ଶିବିରରେ ମୋର ଗୋଟାପଣେ ମିଶିବାର ଅନୁଭୂତି ଭୁଲି ହେବ ନାହିଁ । ସେତେବେଳେ ମୁଁ ତାଳିଯୋଡ଼ାରେ ରହି କାମ କରୁଥାଏ । ଥରେ ଚିତ୍ତଭାଇଙ୍କ ଠାରୁ ଚିଠି ପାଇଲି । ସେ ଭୁବନେଶ୍ୱର ସ୍କୁଲରୁ ପନ୍ଦର ଜଣ ଛାତ୍ରଛାତ୍ରୀଙ୍କୁ ଧରି ଆସୁଛନ୍ତି । ତାଳିଯୋଡ଼ା ସ୍କୁଲର ପିଲାମାନେ ଭୁବନେଶ୍ୱର ସ୍କୁଲ ପିଲାମାନଙ୍କ ସହିତ ଏକାଠି ସେଠାରେ କ୍ୟାମ୍ପ୍ କରିବେ । ଚିତ୍ତଭାଇ ଏହାର ପରିଚାଳନା କରିବେ । ଚିଠିଟି ପଢ଼ି ଆନନ୍ଦରେ ବିଭୋର ହୋଇଗଲି ଯେତିକି ଭୟରେ ଛାନିଆ ହୋଇଗଲି ସେତିକି । ଅବଶ୍ୟ ଚିତ୍ତଭାଇଙ୍କର ସାନ୍ନିଧ୍ୟଲାଭ କରିବାର ଆନନ୍ଦ ସବୁ ଭୟକୁ ଦୂରେଇ ଦେଲା । ଭୟ ହେଉଥିଲା ଏଇଥି ପାଇଁ ଯେ, ତାଳିଯୋଡ଼ା ପିଲାମାନେ ବାହାର ଦୁନିଆ ସହିତ ମୋଟେ ପରିଚିତ ହୋଇ ନଥାନ୍ତି । କଥାବାର୍ତ୍ତା, ଚାଲିଚଳନ, ପୋଷାକପତ୍ର ଇତ୍ୟାଦିରେ ଏମାନଙ୍କ ସହିତ ଆସୁଥିବା ପିଲାଙ୍କର ତାଳ ମିଳିବ ନାହିଁ । ସ୍ଥାନୀୟ ପିଲାମାନଙ୍କୁ ନେଇ ଆମେ ନୂଆକରି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଆରମ୍ଭ କରିଥାଉ । ଭୁବନେଶ୍ୱର ହେଉଛି ରାଜଧାନୀ । ସେଠାରେ ଉପଲବ୍ଧ ହେଉଥିବା ସୁବିଧା ସୁଯୋଗ ଏଠାରେ ମିଳିବ ନାହିଁ । ଏଥିରେ ସେମାନେ ଏଠାକାର ପିଲାମାନଙ୍କ ସହିତ ମିଶି କିପରି ଶିବିର ଜୀବନଯାପନ କରିବେ ? ତଥାପି ମା'ଙ୍କ ଉପରେ ଭରସା ରଖି ରାଜିହୋଇ

ଚିତ୍ତଭାଇଙ୍କ ପାଖକୁ ଚିଠି ଲେଖିଦେଲୁ । ରହିବାକୁ ଘର ନାହିଁ । ଖେଳିବାକୁ ପଡ଼ିଆ ସେମିତି ନାହିଁ । କ୍ରୀଡ଼ା ଉପକରଣ ବି ନାହିଁ । ଖାଇବାକୁ ସେପରି ସୁଖାଦ୍ୟର ମଧ ବ୍ୟବସ୍ଥା ନାହିଁ । କଟକ ଯାଇ ଗୋଟିଏ ଭଲିବଲ୍, ଗୋଟିଏ ଫୁଟ୍‌ବଲ ଓ କ୍ରିକେଟ୍ ବଲ୍ ଓ ବ୍ୟାଟ୍ କିଣି ଆଣିବାକୁ ହେଲା । ଆମ ପିଲାମାନେ ସେତେବେଳେ ଡରକୁଳା ଥିଲେ । କିପରି ଶିବିର ହେବ ଆମର ସେଇ ଚିନ୍ତା ଥାଏ ।

ନିର୍ଧାର୍ଯ୍ୟ ଦିନରେ ଚିତ୍ତଭାଇ ଭୁବନେଶ୍ୱର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ପନ୍ଦର ଜଣ ପିଲାଙ୍କୁ ଧରି ପହଞ୍ଚିଗଲେ । ଆରମ୍ଭ ହୋଇଗଲା ଶିବିର । ଶିବିର ଚାଲିଲା ତା' ଢଙ୍ଗରେ । ଭୁବନେଶ୍ୱର ପିଲାମାନେ ଏତେ ଖୁସୀ ଯେ ଖୁସୀ, କହିଲେ ନ ସରେ । ସକାଳର ଖେଚୁଡ଼ି, ବାରଟା ବେଳର ଭାତଡାଲ୍‌ମା ସେମାନଙ୍କୁ ବହୁତ ଭଲ ଲାଗିଲା । ଅମୃତ ପରି ଲାଗିଲା । ଡାଳିଯୋଡ଼ାରେ ପାହାଡ଼ ଚଢ଼ା, ଜଙ୍ଗଲ ବୁଲା, ଗଛଚଢ଼ା, କୋଳି ତୋଳି ଖିଆ, ଗଛରେ ଡାଳମାଙ୍କୁଡ଼ି ଖେଳ, କାଦୁଅ ଗଡ଼ିଆରେ ପଶି ପାଣି କାଦୁଅ ଚକଟା, ପାଳଗଦାରେ ଚଢ଼ି ମାଙ୍କଡ଼ ପରି ନାଚିବା, ଧନୁଶରରେ ଲାଖ ବିନ୍ଧିବା- ଚିତ୍ତଭାଇ ସେମାନଙ୍କୁ ଏମିତି ସବୁ କାମରେ ମଜାଇ ଦେଲେ ଯେ ଦେଖିଲେ ନିଜେ ବି ସେଇଭଳି ପିଲା ହୋଇଯିବାକୁ ମନ ହେବ । ଏହିଭଳି ହସଖୁସିରେ ସାତଦିନ କଟିଗଲା । ରାତିରେ ଚିତ୍ତଭାଇ ଅନ୍ତେବାସୀମାନଙ୍କ ସହ ଶ୍ରୀଅରବିନ୍ଦଙ୍କ ସାହିତ୍ୟ ଉପରେ ଆଲୋଚନା କରୁଥିଲେ । ପିଲାମାନେ ଆମୋଦପ୍ରମୋଦ କାର୍ଯ୍ୟକ୍ରମରେ ଲାଗି ପଡୁଥିଲେ । ସାତଦିନ କୁଆଡ଼େ ଚାଲିଗଲା ଜାଣି ହେଲାନି । ସେଇଦିନ ଜାଣିଲି ଚିତ୍ତଭାଇ କେବଳ ଆମର ଚିତ୍ତଭାଇ ନୁହଁନ୍ତି, ତୁମର ଚିତ୍ତଭାଇ ନୁହଁନ୍ତି, ଆମ-ତୁମ ସମସ୍ତଙ୍କର ଚିତ୍ତଭାଇ, ସାନ ବଡ଼ ସମସ୍ତଙ୍କର ଚିତ୍ତଭାଇ, ପାଠୁଆ-ଅପାଠୁଆ ସମସ୍ତଙ୍କର ପ୍ରିୟ ଚିତ୍ତଭାଇ ।

ତା'ପରେ ତାଙ୍କ ସହିତ ବହୁତ ମିଶିଛି । ବହୁ ଶିବିର, ସମ୍ମିଳନୀ ଆଦିରେ ଆମେ ଏକାଠି କାମ କରିଛୁ । ୧୯୮୬ ମସିହା ଅକ୍ଟୋବର କୋଡ଼ିଏ ତାରିଖ- ମୁଁ ପଣ୍ଡିଚେରୀରେ ଆସି ରହିବା ପର୍ଯ୍ୟନ୍ତ ଚିତ୍ତଭାଇଙ୍କ ଗାଁ ବାଗଳପୁରକୁ ଅଳକାନଦୀ ଡେଇଁ ବହୁଥର ଯାଇଛି । ବାପୁଜୀନଗର ୮୩-ଏ ବିଶ୍ୱନୀଡ଼ମ୍‌ରେ ମଧ ପହଞ୍ଚି ତାଙ୍କୁ ଭେଟିଛି । ମୋର ପାଣ୍ଡିତ୍ୟ ନାହିଁ ଚିତ୍ତଭାଇଙ୍କ ପାଣ୍ଡିତ୍ୟକୁ କଳନା କରିବାପାଇଁ । ମୋର ସାମର୍ଥ୍ୟ ନାହିଁ ଚିତ୍ତଭାଇଙ୍କର ସାଧନାକୁ ବର୍ଣ୍ଣନା କରିବାକୁ, ମୋର ଆଖି ନାହିଁ ଚିତ୍ତଭାଇଙ୍କୁ ଯଥାର୍ଥରେ ଚିହ୍ନିବାକୁ । ମୁଁ ତାଙ୍କୁ ଖାଲି ଏତିକି

ଜାଣେ ସେ ମୋର ଚିତ୍ତଭାଇ ବୋଲି, ମା'ଙ୍କ କାର୍ଯ୍ୟରେ ସେ ଜଣେ ଅଗ୍ରଣୀ ଯନ୍ତ୍ର ବୋଲି। ଆମେ ତାଙ୍କୁ ଯେ ଯେତେ ଯାହାକିଛି କହୁ, ସେ ତା'ଠାରୁ ଆଉ କିଛି ନିଆରା ବୋଲି, ଆମ ଚିତ୍ତରଞ୍ଜନ କରୁଥିବା ଚିତ୍ତଭାଇ ବୋଲି .....।

*ମଧୁସୂଦନ ମିଶ୍ର*
*ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ*

# ବନ୍ଧୁ ପରି ବନ୍ଧୁଟିଏ

ଯେତେବେଳେ ମୁଁ ମ୍ୟାଟ୍ରିକ୍ ପଢୁଥାଏ ସେ ସମୟରେ ଏଠାକାର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଏକ ଶ୍ରମଶିବିର ଅନୁଷ୍ଠିତ ହୋଇଥିଲା। ମୋର ମ୍ୟାଟ୍ରିକ୍ ପରୀକ୍ଷା ଦେବାର ଥିଲେ ମଧ ସେ ଶିବିରରେ ମୁଁ ବେଶ୍ କିଛି ଦିନ କଟାଇଥିଲି ଓ ଚିତ୍ତଭାଇଙ୍କ ଆଲୋଚନାକୁ ପଛରେ ବସି ଶୁଣୁଥିଲି। ସେଠି ଖାଲି ତାଙ୍କୁ ଦେଖୁଥିଲି। ସେ ଯେ କିଏ ଓ କ'ଣ ଏ ବିଷୟରେ କିଛି ବି ଜାଣି ନଥିଲି। ତା'ପରେ ଢେଙ୍କାନାଳର ''ବାରଦା''ଠାରେ ଶ୍ରମଶିବିର ଅନୁଷ୍ଠିତ ହୋଇଥିଲା। ସେଠିକା ଶିବିରରେ ଯୋଗ ଦେବାପାଇଁ ଆମେ କେଇଜଣ ଯାଇ ପହଞ୍ଚିଥିଲୁ। ଦିନେ କୌଣସି ଏକ ଆଲୋଚନା ପ୍ରସଙ୍ଗରେ ମୋତେ ସମସ୍ତଙ୍କ ଭିତରେ ଚିହ୍ନଟ କରି ଚିତ୍ତଭାଇ କ'ଣ ଗୋଟେ କହିଲେ, ସେ କଥା ଶୁଣି ପ୍ରଥମେ ମୁଁ ଚମକି ଗଲି। ଆରେ, ମୁଁ ସିନା ଚିତ୍ତଭାଇଙ୍କୁ ଚିହ୍ନିଛି, ହେଲେ ସେ ତ ମୋ ସହ କଥା ହୋଇନାହାନ୍ତି କି ପରିଚିତ ବି ନୁହଁନ୍ତି, କେମିତି ମୋତେ ଜାଣିଲେ ?

ଆମ ଭିତରେ ଯେଉଁମାନେ ଅନ୍ୟମାନଙ୍କୁ ଭଗବଦ୍ ମାର୍ଗରେ ନେଇଯିବେ ବୋଲି କେତେ କ'ଣ କରୁଛନ୍ତି, ସେମାନଙ୍କ ନିକଟରେ ଆପଣ ପରିଚିତ ହେବାକୁ ଚେଷ୍ଟା କଲେ ବି ସେମାନେ ସେଥିକୁ ଜମା ଦୃଷ୍ଟି ଦିଅନ୍ତିନି। କେବଳ ତାଙ୍କ ପାଖ ଲୋକକୁ ହିଁ ଲୋଡୁଥାନ୍ତି। ସମାଜରେ ସାଧୁ ବା ସାଧକ ବୋଲି ମୋହର ଲଗାଇଥିବା ମଣିଷ ଦେଖିଲେ ମନେ ହୁଏ, ସେ କେବଳ ଅନର୍ଗଳ ତା ଭାଷାରେ ଶୁଖିଲା ଉପଦେଶ ହିଁ ଦେଇ ଚାଲିଛି। ସଙ୍ଗୀ ମଣିଷମାନଙ୍କ ସ୍ତରକୁ ଓହ୍ଲେଇ ଆସିବା ପାଇଁ ତା'ର ହୁଏତ ବେଳ ଅଥବା ଇଚ୍ଛା ନାହିଁ।

ହେଲେ, ଚିତ୍ତଭାଇ ଏସବୁର ବ୍ୟତିକ୍ରମ। ସେ ସବୁ ମଣିଷକୁ ନେଇ ବାଟ

ଚାଲୁଛନ୍ତି । ତାଙ୍କ ଦୃଷ୍ଟିରେ ଧନୀ, ଗରିବ କିମ୍ବା କଳା, ଗୋରା, ଆର୍ଯ୍ୟ, ଅନାର୍ଯ୍ୟ ଏଭଳି କୌଣସି ବାଛ ବିଚାର ନଥାଏ । ସେ କେବଳ ସମସ୍ତଙ୍କୁ ମଣିଷ ବୋଲି ବିଚାରନ୍ତି । ସମାଜରେ ନିଜକୁ ଜ୍ଞାନୀ, ପଣ୍ଡିତ ବୋଲାଉଥିବା ଲୋକେ ଅନେକ ମିଳିବେ । ମାତ୍ର ଚିତ୍ତଭାଇଙ୍କ ଭଳି ଯଥାର୍ଥ ଜ୍ଞାନୀ ଓ ମାନବପ୍ରେମୀ ମଣିଷ ଏ ସଂସାରରେ ସତରେ ଖୁବ୍ ବିରଳ । ତାଙ୍କ ଲେଖାମାନଙ୍କରେ ମଣିଷ ପ୍ରତି ଯେ ଏକ ଗଭୀର ସମ୍ବେଦନଶୀଳ ଚିତ୍ର ରହିଛି ଏହା ନିଃସନ୍ଦେହ । ସେ ସମସ୍ତ ଲେଖା ପଢ଼ିଲେ ମୁଁ ଭାବୁଛି ମଣିଷମାନଙ୍କ ଭିତରେ ଥିବା ଘୃଣା, ବିଦ୍ୱେଷ ଇତ୍ୟାଦି ସବୁ କିଛି ଦୂରେଇ ଯାଇ ଖୁବ୍ ଶୀଘ୍ର ଏକ ସୁସ୍ଥ ସମାଜ ଗଠନ ହୋଇପାରିବ ।

ଆମେ ଆଧ୍ୟାତ୍ମିକତା ନାଁରେ ସାଧାରଣ ମଣିଷଠାରୁ ଦୂରେଇ ରହିବାକୁ ପସନ୍ଦ ମନେ କରୁ । ପ୍ରକୃତ ଆଧ୍ୟାତ୍ମିକତା ଯେ ଆମ ସମଗ୍ର ଜୀବନ ତଥା ଆମ ଜୀବନ ଯେଉଁ ସମାଜ ସହ ଯୋଡ଼ି ରହିଛି ତା' ଭିତରେ ବି ସଂଚରି ଯାଇପାରିବ, ଏ କଥାକୁ ଆମେ ପାଶୋରି ଦେଉଛୁ । ତାଙ୍କ ପ୍ରବନ୍ଧଗୁଡ଼ିକ ଅଧ୍ୟୟନ କଲେ ଭିତରର ଅନେକ ଦ୍ୱାର ଖୋଲିଯିବା ପରି ଅନୁଭୂତ ହୁଏ । ତହିଁରେ ବ୍ୟବହୃତ ଶବ୍ଦ ଓ ବାକ୍ୟଗୁଡ଼ିକ ଯେ ସଂପୂର୍ଣ୍ଣଭାବେ ଆଧ୍ୟାତ୍ମିକତାକୁ ସ୍ପର୍ଶ କରି ରହିଛି ଏହା ବେଶ୍ ବାରି ହୋଇଯାଏ । ସବୁ କିଛିକୁ କେଡ଼େ ସହଜ ଓ ସରଳ ଭାବରେ ତାଙ୍କ ଲେଖାରେ ସେ ସ୍ଥାନ ଦିଅନ୍ତି, ତାହା ନ ପଢ଼ିଲେ ଜାଣି ହେବ ନାହିଁ । ତାଙ୍କ ସୃଜନକୁ ଅନୁଶୀଳନ କଲେ ଜୀବନ ପ୍ରତି ଏକ ନୂତନ ମୂଲ୍ୟବୋଧ ସୃଷ୍ଟି ହୁଏ । ହତାଶା କିମ୍ବା ଅବସନ୍ନତା କୁଆଡ଼େ ଉଭେଇ ଯାଏ ।

ଜୀବନରେ ଉପନ୍ୟାସଟିଏ ଲେଖିବାକୁ ଇଚ୍ଛା ଥିଲେ ବି ଲେଖି ପାରି ନାହାନ୍ତି । ମଣିଷକୁ ସ୍ୱପ୍ନର ତାଜମହଲ ଦେଖାଇବା ପରିବର୍ତ୍ତେ ସେ ତା'ର ବାସ୍ତବ କୁଡ଼ିଆକୁ ଚିହ୍ନାଇ ଦେଇଛନ୍ତି । ଜୀବନକୁ ଅତି ନିକଟରୁ ଦେଖିଛନ୍ତି । ଅନୁଭବ ତ କରିଛନ୍ତି । ତେଣୁ ସେଇ ବାସ୍ତବ ତଥା ନିଛକ କଥାକୁ ତାଙ୍କ ପ୍ରବନ୍ଧରେ ସବୁ ସ୍ଥାନ ଦେଇଛନ୍ତି । ତାଙ୍କର ଅନୁବାଦଗୁଡ଼ିକ ମଧ୍ୟ ବେଶ୍ ଉଲ୍ଲେଖନୀୟ । ତା ମାଧ୍ୟମରେ ଆମେ ଅନେକ ଜ୍ଞାନ ଭଣ୍ଡାର ସହ ପରିଚିତ ହୋଇ ପାରିଛୁ । ଅନୁବାଦ କ୍ଷେତ୍ରରେ ସବୁଠୁ ମହାନ କାମ ହେଉଛି- ମାଆ ଶ୍ରୀଅରବିନ୍ଦଙ୍କ ରଚନାବଳୀକୁ ଓଡ଼ିଆରେ ରୂପାନ୍ତର କରିବା । ସେ ରୂପାନ୍ତର ଯେ ମୂଳଲେଖାର ଏତେ ଅନୁରୂପ ତାହା ନ ପଢ଼ିଲେ ଜାଣି ହେବନି । ଆମେ କୋଟି କୋଟି ଓଡ଼ିଶାବାସୀ ଏଥିପାଇଁ ତାଙ୍କ ନିକଟରେ ଚିର କୃତଜ୍ଞ ।

ତାଙ୍କୁ ଜାଣିଲା ଦିନଠୁ ତାଙ୍କର ଲେଖା ଖବରକାଗଜରେ ବାହାରିଲେ କିମ୍ବା

ତାଙ୍କ ପୁସ୍ତକଟିଏ ପାଇଲେ ଖୁବ୍ ଆଗ୍ରହରେ ପଢ଼ିବାର ଇଚ୍ଛା ଜାଗ୍ରତ ହୁଏ । ଯାହା ହେଉ ଭାଗ୍ୟଧର ଭାଇଙ୍କ ପରାମର୍ଶରେ ତାଙ୍କଠୁ କିଛି ବହି ସଂଗ୍ରହ କରି ପଢ଼ିବାର ସୁଯୋଗ ପାଇଛି । ଏହା ମୋର ଦୃଷ୍ଟିଭଙ୍ଗୀକୁ ନିଶ୍ଚିତରୂପେ ବଦଳାଇ ପାରିଛି । ସବୁଠୁ ଆଶ୍ଚର୍ଯ୍ୟ କଥା, ଦୀର୍ଘ ବାର କି ତେର ବର୍ଷରେ ମୁଁ ଯେତେବେଳେ ତାଙ୍କ ପାଖକୁ ମୋର ପରିଚୟ ଜଣାଇ ଚିଠିଟିଏ ଲେଖିଲି । ପ୍ରତ୍ୟୁତ୍ତରରେ ସେ ମୋତେ ଆମ ଅଞ୍ଚଳର ଅନ୍ୟମାନଙ୍କ (ଯେଉଁମାନଙ୍କୁ ଜାଣିଥିଲେ) ବିଷୟରେ ଖୁବ୍ ଭଲ ଭାବରେ ମନେ ଅଛି ବୋଲି ଚିଠିରେ ଜଣାଇଲେ । ତାହା ମୋତେ ଅତୀବ ବିସ୍ମିତ କରିଦେଲା । ଏହାକୁ ଆତ୍ମୀୟତା ଛଡ଼ା ଆଉ କ'ଣ କହିବା ?

ସତରେ ସେ ଯେ ବନ୍ଧୁଟିଏ ପରି ବନ୍ଧୁ ଏକଥା କହିବାକୁ ପଡ଼ିବନି । ତାଙ୍କ ବିଷୟରେ ଯେତେ କହିଲେ ବି କମ୍ ହେବ । ସେ ଏକ ମହାନ୍ ଓ ବିଶାଳ ବ୍ୟକ୍ତିତ୍ୱ, ତଥାପି ଆମ ଆଦରର ଚିତ୍ତଭାଇ । ଭଗବାନ କରନ୍ତୁ ସେ ଏମିତି ଆହୁରି ନୂଆ ନୂଆ ଲେଖା ଲେଖିଚାଲନ୍ତୁ ଏବଂ ଆମର ପଥ ପ୍ରଦର୍ଶକ ହୁଅନ୍ତୁ ।

*ସନ୍ଧ୍ୟାରାଣୀ ଦଳ*
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର*
*ହରିପୁର, ମୟୂରଭଂଜ*

# ମୋ ପ୍ରିୟ ଲେଖକ

ଚିତ୍ତଭାଇ (ଚିତ୍ତରଂଜନ ଦାସ) ହେଉଛନ୍ତି ମୋର ସବୁଠାରୁ ପ୍ରିୟ ଲେଖକ, ନିବନ୍ଧକାର ଓ ସାହିତ୍ୟିକ । ସେ ହେଉଛନ୍ତି ସାହିତ୍ୟର ଅଦ୍ଭୁତ ସମାଲୋଚକ, ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ତଥା ସହୃଦୟ ଲେଖକ । ତାଙ୍କ ପରି ମୌଳିକ ବିବେଚନା ·ଶକ୍ତି, କୌଣସି ଲେଖା ମଧ୍ୟରେ ଥିବା ଲେଖକଙ୍କର ମନୋଭାବର ନିରୀକ୍ଷଣ ତଥା ଗୁଣର ମୂଲ୍ୟାଙ୍କନ କରିବାର ଅପୂର୍ବ କ୍ଷମତା ଆଜିକାଲିର ସମାଲୋଚକ ଏବଂ ନିବନ୍ଧକାରମାନଙ୍କ ମଧ୍ୟରେ ଦୃଷ୍ଟିଗୋଚର ହୁଏନାହିଁ । ମୋର ମନେ ହୁଏ ସାହିତ୍ୟରେ ସେ ଯେଉଁ ସ୍ଥାନ ପାଇଛନ୍ତି ସେହି ସ୍ଥାନ ଅନ୍ୟ କୌଣସି ଲେଖକଙ୍କୁ ଏପର୍ଯ୍ୟନ୍ତ ମିଳିନାହିଁ । ତାଙ୍କର ଭାଷା ଅତ୍ୟନ୍ତ ପରିଷ୍କୃତ, ପରିମାର୍ଜିତ, ସାବଲୀଳ ଏବଂ ସରଳ ଅଟେ । ତାଙ୍କର ଭାଷା ସବୁପ୍ରକାର ଭାବକୁ ପ୍ରତିପାଦନ କରିବାକୁ ସମର୍ଥ ଅଟେ । ତାଙ୍କ ଭାଷାର ଶବ୍ଦ ତାଙ୍କ ଭାବନାର

ପ୍ରତିନିଧି ଅଟେ । ତାଙ୍କର ବକ୍ତବ୍ୟ ତାଙ୍କର ବିଚାରଧାରାର ପ୍ରତୀକ ଅଟେ । ସେ ଜଣେ ଅସାଧାରଣ ସାହିତ୍ୟିକ ଅଟନ୍ତି । ବିଶ୍ୱକୁ ଏକ ରୂପେ ଦେଖିବା ଏବଂ ମଣିଷକୁ ଜାଣିବା ହେଉଛି ତାଙ୍କର ଧର୍ମ । ଭାରତ ଓ ଭାରତ ବାହାରେ କେତେ ସ୍ଥାନରେ ସେ ଯେ ଘୂରି ବୁଲୁଛନ୍ତି କେବଳ ସେହିସବୁ ଲେଖିବାକୁ ଗଲେ ହିଁ ଏକ ପୃଥକ୍ ପୁସ୍ତିକା ହୋଇଯିବ । ସେ ଯେଉଁ ଯେଉଁ ସ୍ଥାନକୁ ଯାଇଛନ୍ତି, ସେହି ସବୁ ଦେଶ ଓ ଦେଶର ଲୋକମାନଙ୍କୁ ଚିହ୍ନିବା ପାଇଁ, ବୁଝିବା ଓ ବୁଝାଇବା ପାଇଁ ତାଙ୍କର କି ଆଗ୍ରହ ! ଚିଠି ପତ୍ରରେ, ଡାଏରୀରେ, ଭ୍ରମଣ କାହାଣୀରେ ତାହାର ଭୂରି ଭୂରି ପରିଚୟ ମିଳେ । ଏଇ ଯେ ତାଙ୍କର ଅଜଣାକୁ ଜାଣିବାର ଆଗ୍ରହ, ଦୂରକୁ ନିକଟ କରି ପାରିବାର ସାଧନା, ଏଥିପାଇଁ ସେ ଦେଶ ବିଦେଶରେ ଶ୍ରଦ୍ଧା, ସମ୍ମାନ, ସ୍ନେହ, ପ୍ରୀତି କିଛି କମ୍ ପାଇନାହାନ୍ତି । ଏବେ ମଧ୍ୟ ସେଥିରେ ଅଭାବ ପରିଲକ୍ଷିତ ହୋଇନି ।

ଚିତ୍ତଭାଇଙ୍କ ଜୀବନ ଯେପରିକି ଏକ ମହାସାଗର । ସୁଦୂର ପ୍ରସାରିତ ତାଙ୍କର କଳ୍ପନା ଜଗତ । ଦେଶ ବିଦେଶରୁ ସେ ଯେପରି ନବ ଆନନ୍ଦ, ନବ ଉଦ୍ଦୀପନା ଆହରଣ କରି ଆଣି ତାଙ୍କ ଲେଖାମାଧ୍ୟମରେ ବାଣ୍ଟି ଦିଅନ୍ତି ସେଗୁଡ଼ିକୁ ପଢ଼ିଲେ ମନେହୁଏ ସେହି ଦେଶ ବିଦେଶରେ ଆମେ ଯେମିତି ବୁଲିଆସିଛୁ । କେବଳ ବାହାରର ଘଟଣା ନେଇ ଭିତର ମନୁଷ୍ୟଟିକୁ ସବୁ ସମୟରେ ଚିହ୍ନା ଯାଏ ନାହିଁ । ଚିତ୍ତଭାଇଙ୍କ ଜୀବନ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର । ତାଙ୍କ ମଧ୍ୟରେ ଏତେ ସବୁ ମୂଲ୍ୟବାନ ଜିନିଷ ଭରିରହିଛି ବୋଲି ଜଣା ବି ପଡ଼େ ନାହିଁ । ଆମ୍ଭେମାନେ ଯାହାକୁ ଆତ୍ମୀୟ କହୁ ସେମାନଙ୍କର ସ୍ନେହ, ପ୍ରୀତି ଅନେକ ସମୟରେ ହୁଏତ ସ୍ୱାର୍ଥବିଜଡ଼ିତ । ଚିତ୍ତଭାଇଙ୍କର ସ୍ନେହ ଶ୍ରଦ୍ଧା କିନ୍ତୁ ସମ୍ପୂର୍ଣ୍ଣ ନିସ୍ୱାର୍ଥ ଓ ଆନ୍ତରିକ । କେବଳ ଆମ ଦେଶରେ ନୁହେଁ ବିଦେଶରେ ମଧ୍ୟ ଏମିତି ଲୋକ ଅଛନ୍ତି ଯେଉଁମାନେ କି ତାଙ୍କର ସେହି ସ୍ନେହ, ପ୍ରୀତିରେ ବନ୍ଧା ହୋଇଯାଉଛନ୍ତି । ମୋର ସୌଭାଗ୍ୟ ଯେ ମୁଁ ତାଙ୍କ ସ୍ନେହ, ପ୍ରୀତିରେ ବନ୍ଧା । ତାଙ୍କର ଆଦର୍ଶକୁ ଅନୁସରଣ କରି ମୋତେ ଚାଲିବାକୁ ହେବ ଅନ୍ତହୀନ ପଥରେ ।

*ଭାଗ୍ୟଲକ୍ଷ୍ମୀ ସାହୁ*

*(ମାର୍ଫତ୍ ପଥିକ ପ୍ରକାଶନୀ)*

# ମଣିଷ ପରି ମଣିଷ

୧୯୭୫/୭୬ ମସିହା ହେବ ବୋଧହୁଏ । ଆମେ ବିକ୍ରମ ଦେବ ମହାବିଦ୍ୟାଳୟ, ଜୟପୁର (ଅବିଭକ୍ତ କୋରାପୁଟ ଜିଲ୍ଲା) ଠାରେ ଥାଉ । ହଠାତ୍ ଇଏ (ମୋ ସ୍ୱାମୀ, ଅଧ୍ୟାପକ ଚୈତନ୍ୟ ପ୍ରସାଦ ସେଠୀ) ଆସି କହିଲେ, ଆଜି ଚିତ୍ତଭାଇ ଆସିବେ, କ'ଣ ଖାଇବା କର । ତାଙ୍କ ସହ ଆଉ ଜଣେ ଦୁଇଜଣ ଆସିପାରନ୍ତି । ଅବଶ୍ୟ ଆଗରୁ ୟାଙ୍କ ପାଖକୁ ଆସୁଥିବା ଚିଠିରୁ ଚିତ୍ତଭାଇଙ୍କୁ ଜାଣିଥିଲି । ତାଙ୍କୁ କିନ୍ତୁ ଦେଖି ନଥିଲି । ନିଜ ବ୍ୟକ୍ତିଗତ ସମ୍ପର୍କୀୟ ପାଖକୁ ଯେମିତି ଚିଠି ଲେଖାଯାଏ, ଚିତ୍ତଭାଇ ଠିକ୍ ସେମିତି ୟାଙ୍କ ପାଖକୁ ଲେଖନ୍ତି । ଚିଠିଗୁଡ଼ିକ ପଢ଼ିଲେ ସେ ଯେ ଆମ ପରିବାରର ଜଣେ ମଣିଷ-ତାହାହିଁ ବେଶ୍ ବାରି ହୋଇଯାଏ ।

ସେ ଓ ତାଙ୍କ ସହ ଦୁଇ ଜଣ ବଂଧୁ ସେଦିନ ଆମ ଘରକୁ ଆସିଲେ । ମୋ ବାହାଘରର ୨/୩ ବର୍ଷ ହୋଇଥାଏ । ରୋଷେଇ ବୋଲି ସେମିତି କିଛି ମୁଁ ଜାଣିନଥାଏ । ପ୍ରଚେଷ୍ଟା ଓ ଭୁଲ୍‌ଭଟକା ଦେଇ ଯାହା କିଛି ଅଳ୍ପ ଅଳ୍ପ ଅଭିଜ୍ଞତା ମୋର ହୋଇଥିଲା, ତାହାରି ଭିତରେ ଭାତ, ମାଛ, ଖଟା, ଡାଲି, ଭଜା ଏମିତି କ'ଣ ସବୁ କରିଦେଇଥାଏ । ଖାଇସାରିବା ପରେ ସେ ମୋ ପାଖକୁ ଆସିଲେ ଓ କହିଲେ- ଖୁବ୍ ବଢ଼ିଆ ହୋଇଛି । ମୁଁ ଏକ୍‌ବାର ଖୁସିରେ ଅବାକ୍ । ଘର କଥା, ପିଲାଙ୍କ କଥା ସବୁ ପଚାରି ବୁଝିଲେ ଠିକ୍ ଆପଣାର ମଣିଷ ପରି । ସେଦିନ ମୁଁ ଜଣେ ମଣିଷଭିତରେ ଆଉ ଜଣେ ମହାମାନବର ସ୍ପର୍ଶ ପାଇଲା ପରି ଅନୁଭବ କଲି । ଭୋକଶୋଷ ଭୁଲିଗଲା ପରି ଲାଗିଲା । ତା' ପରଠାରୁ ସେ ମୋ ପାଇଁ, ମୋ ପିଲାମାନଙ୍କ ପାଇଁ ଯେମିତି ଜଣେ ଅତି ଆପଣାର ଦେବ ସୁଲଭ ମଣିଷ ତାହାହିଁ ମୋର ଦୃଢ଼ ଧାରଣା ହେଲା ।

କଟକ ରେଭେନ୍‌ସା କଲେଜ ପରିସରରେ ଆମେ ଥିବାବେଳେ ଚିତ୍ତଭାଇ ଆମ ଘରକୁ ବହୁବାର ଆସି ଆମ ଘରଟିକୁ ଅନ୍ୟ ଏକ ପ୍ରକାର ଆନନ୍ଦମୁଖର କରିଦେଇଛନ୍ତି । ପ୍ରତି ରବିବାର ଉପରବେଳା ସାଢ଼େ ଦୁଇଟା କିମ୍ବା ତିନିଟା ବେଳକୁ ସେ ଆସି ଆମ ବ୍ଲକ୍‌ର ସିଡ଼ି ତଳେ ସାଇକେଲ୍‌ଟି ଥୋଇ ଉପରକୁ ଉଠନ୍ତି ।

ତା'ପରେ ସ୍ୱତଃ ଜଣ ଜଣ ହୋଇ ଅନ୍ୟ ଅଧ୍ୟାପକମାନେ ଆମ ଘରକୁ ଆସନ୍ତି । ଡ୍ରଇଂ ରୁମ୍‌ରେ ନାନା ବିଷୟରେ ଆଲୋଚନା ଓ ଖୁସି ଗପ ଚାଲେ । ସାହିତ୍ୟ, ସମାଜ, ଶିକ୍ଷା, ଦର୍ଶନ, ମନସ୍ତତ୍ତ୍ୱ, ରାଜନୀତି ବିଜ୍ଞାନ, ଏମିତି ଅନେକ ବିଷୟରେ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଜ୍ଞାନୋଦ୍ଦୀପକ ଆଲୋଚନା ପର୍ଯ୍ୟାଲୋଚନା ହୁଏ । ମୁଁ ନେପଥ୍ୟରେ ରହି ଘର କାମ କଲାଭିତରେ ସେ ସବୁକୁ କାନ ଦେଇ ଶୁଣେ । ସବା ଶେଷରେ ଆଲୋଚନା ସରି ଆସିଲା ବେଳକୁ ମୋ ପାଳି ପଡ଼େ, ଅର୍ଥାତ୍ ଚା' ଓ ଯଦି କେଉଁଦିନ ସୁବିଧା ଥାଏ କିଛି ଛଣା ଛଣି ଇତ୍ୟାଦି ନେଇ ମୁଁ ପରଷି ଦିଏ । କିଛି ନଥିଲେ ମୁଡ଼ି, ଚିନାବାଦାମ୍ ଓ ଚା'ରେ ବେଶ୍ ଖୁସି ଗପ ଚାଲେ । ଚିତ୍ତଭାଇ କି ଆନନ୍ଦରେ ସମସ୍ତଙ୍କ ସହ ସେ ସବୁ ଖାଆନ୍ତି, ତାହା ଦେଖିବାର କଥା । ସତେ ଅବା ତାଙ୍କରି ଘରେ ଏମିତି ଗୋଟିଏ ପାରିବାରିକ ଗହଳ ଚହଳ ଲାଗିଛି ।

ତାଙ୍କରି କଥାରେ କଥାରେ ଆମ ବ୍ୟକ୍ତିଗତ ଓ ସାମାଜିକ ସ୍ତରରେ ଦେଖାଦେଉଥିବା ବେଖାପ ଜୀବନର କଥା ଫୁଟିଉଠୁଥିବାର ମୁଁ ଲକ୍ଷ୍ୟ କରିଛି । ତାଙ୍କ ସ୍ୱପ୍ନର ଏକ ମଣିଷସମାଜ ପାଇଁ ସେ ଯେମିତି ସର୍ବତ୍ର ସକ୍ରେଟିସ୍‌ଙ୍କ ପରି ନିଜର ଜ୍ଞାନଦୀପ୍ତ ଆଖିରେ ଚାରିଆଡ଼କୁ ନାନା ଅବଶୋଷ ଭିତରେ ଅନାଇ ଚାଲିଛନ୍ତି -- ତାହାହିଁ ମୋତେ ବେଶି ଆକୃଷ୍ଟ କରିଛି । ତାଙ୍କ ଲେଖାସମୂହରେ, ଭାଷଣରେ ଓ ଅନ୍ୟ ସହିତ କଥୋପକଥନ ଭିତରେ ମଧ ବାରିହୋଇଯାଏ ଯେ- ସେ ଏ ବର୍ତ୍ତମାନର ସମାଜକୁ ସଂଶୋଧନ ବା ସଂସ୍କାର କରିବାର ପ୍ରୟାସରେ ଅଛନ୍ତି । ତାଙ୍କ ପରି ଜଣେ ବିଦ୍ୱାନ୍, ମହତ୍ ହୃଦୟ (ଯାହା ବିଶ୍ୱ ମାନବୀୟ ଭ୍ରାତୃତ୍ୱ-ଆଲୋକରେ ସଦା ଭାସ୍ୱର) ମଣିଷ ମୁଁ ଏଯାଏଁ ଦେଖିନାହିଁ ।

ସକ୍ରେଟିସ୍‌ଙ୍କୁ ମୁଁ ଦେଖିନାହିଁ ସତ- ମାତ୍ର ତାଙ୍କ ବିଷୟରେ ଦର୍ଶନ ଇତିହାସରେ ପଢ଼ିଥିବା ଧାରଣା ମୋତେ ତାଙ୍କର ଏକ ସ୍ପଷ୍ଟ ଚିତ୍ର ଦେଇଥାଏ ବୋଲି ମୁଁ ଭାବେ । ଚିତ୍ତଭାଇଙ୍କ ସଂସ୍ପର୍ଶରେ ଆସିଲା ଦିନଠାରୁ ଚିତ୍ତଭାଇ ଆଧୁନିକ ପୃଥିବୀର ଯେ ଅନ୍ୟ ଜଣେ ସକ୍ରେଟିସ୍, ତାଙ୍କ ବିଷୟରେ ଏପରି ଏକ ସୁନିଶ୍ଚିତ ପ୍ରତ୍ୟୟ ସ୍ୱତଃ ଆସିଯାଏ । ତାଙ୍କର ପ୍ରତ୍ୟେକ ରଚନାରେ ମୁଁ ଜଣେ ସକ୍ରେଟିସ୍‌ଙ୍କୁ ଭେଟିଲା ପରି ଲାଗେ । ସକ୍ରେଟିସ୍ ଯେମିତି ସମାଜରେ ବ୍ୟକ୍ତିର ଦାୟିତ୍ୱ ଓ କର୍ତ୍ତବ୍ୟ, ଜ୍ଞାନ, ସାଧୁତା, ସାମାଜିକତା ଆଦି ବିଷୟରେ ଯୁବକମାନଙ୍କୁ ପ୍ରଶ୍ନ କରି ତାଙ୍କ ଭିତରେ ଏକ ଆଲୋଡ଼ନ ସୃଷ୍ଟି କରିଦେଇ ଏକ ସଂସ୍କୃତି ସମ୍ପନ୍ନ ସାମାଜିକ ଜୀବନ ଓ ଦର୍ଶନକୁ ବଂଚିବା ପାଇଁ ପ୍ରେରଣା ଦିଅନ୍ତି, ଠିକ୍ ସେମିତି ଚିତ୍ତଭାଇ ତାଙ୍କ କଥାରେ, ଲେଖାରେ ଓ ତାଙ୍କ ପ୍ରାତ୍ୟହିକ ଜୀବନ ଚର୍ଯ୍ୟାରେ ମଧ ଏ ଦେଶର ପୁରାତନ, ନବୀନ ଓ କିଶୋର କିଶୋରୀମାନଙ୍କୁ ବର୍ତ୍ତମାନର ସୁଦୃଢ଼

ଭିତ୍ତି ଉପରେ ସବୁ ମଣିଷ ପାଇଁ ଏକ ସୁନ୍ଦର ଭବିଷ୍ୟତ ଗଢ଼ି ତୋଳିବାର ଉଦ୍‌ବୋଧନ ଦେଇ ଚାଲିଛନ୍ତି । ସେ ପାଇଁ ସତତ ଉଦ୍ୟମ କରି ଚାଲିଛନ୍ତି । ଏବେ ଥରେ ତାଙ୍କ ସଦ୍ୟ ପ୍ରକାଶିତ ବହି ''ଭଲା ମାନୁଛି ଦେଖ'' ପଢୁ ପଢୁ ଆମ ସଂସ୍କୃତି ଉପରେ ଟିପ୍ପଣୀ କାଟିଥିବା ଏକ ଆଲେଖ୍ୟ ''ସଂସ୍କୃତି ଏକ ସଂସ୍କାର'' ପଢ଼ି ଅବାକ୍ ହୋଇଗଲି । ଆମ ସମାଜରେ ସୁବିଧାବାଦୀ ଥୋକେ ଥିଲାବାଲା ଓ ପାରିବାରବାଲାମାନଙ୍କର ସୌଖିନ୍ ସ୍ୱେଚ୍ଛାଚାରିତାକୁ ଭାଷାର ନାନା ଉପଚାରରେ ଢ଼ୁଆଇ ରଖାହୋଇଥିବା ଉପର ସୁନ୍ଦର ଭିତର ଫମ୍ପା ଜୀବନ ଆଚାରକୁ କିପରି କାଳ କାଳ ଏ ଦେଶର ସଂସ୍କୃତି ବୋଲି ଆମକୁ ଘୋଷାଇ ଦିଆଯାଇଛି, ଚିତ୍ତଭାଇ ଏ ଆଲେଖ୍ୟଟିରେ ତାହା ହିଁ ଦର୍ଶାଇଛନ୍ତି ।

ଆମ ଦେଶର ସଂସ୍କୃତି 'ସର୍ବେ ଭବନ୍ତୁ ସୁଖିନଃ......' 'ବସୁଧୈବ କୁଟୁମ୍ବକମ୍.....' ସଂଗଚ୍ଛଧ୍ୱଂ ସଂବଦଧ୍ୱମ୍......' ଇତ୍ୟାଦି ବୋଲି ଆମେ ବାହାସ୍ଫୋଟ ମାରି କହୁ । ଏଠି ସମସ୍ତେ ସମାନ ବୋଲି କହୁ, ମାତ୍ର ବାସ୍ତବ କ୍ଷେତ୍ରରେ ତହିଁର ବିପରୀତଟି ଆଚରଣରେ ଦେଖାଇଥାଉ । ତେଣୁ ସଂସ୍କୃତି କ'ଣ ଆମେ ଭୁଲିଯାଉ ବା ଜାଣି ଜାଣି ଭୁଲୁ । ଚିତ୍ତଭାଇଙ୍କ ଭାଷାରେ - ''ଯେ କୌଣସି ସାମୂହିକ ଜୀବନର ମୂଳ ପରିମଳଗୁଡ଼ିକୁ ଆମେ ତାହାର ସଂସ୍କୃତି ବୋଲି କହିବା । ସେହି ସମୂହରେ ପ୍ରତ୍ୟେକ ମଣିଷକୁ ମଣିଷ ବୋଲି ସ୍ୱୀକାର କରାଯାଇଛି କି ନାହିଁ ଅର୍ଥାତ୍ ପ୍ରତ୍ୟେକ ମନୁଷ୍ୟ ସମ୍ମାନର ସହିତ ଜୀବନ ବଂଚିପାରୁଛି କି ନାହିଁ, ତାହାହିଁ ସେଠି ତା' ସଂସ୍କୃତିର ସବାମୂଳ ମାନଦଣ୍ଡ ହୋଇ ଅବଶ୍ୟ ରହିବ ।'' ଏହି ଉଦ୍ଧୃତିଟିକୁ ଆଖି ଆଗରେ ରଖି ବର୍ତ୍ତମାନର ଆମ ସାମାଜିକ ଚଳଣି ଓ ତଥା- କଥିତ ସଂସ୍କୃତିର ଆଟୋପଗୁଡ଼ିକୁ ଲକ୍ଷ୍ୟ କଲେ, ତାଙ୍କରି ଭାଷାରେ ଆମେ ପ୍ରକୃତ ମଣିଷ ହୋଇଥିଲେ ଆଗ ନିଜ ଭିତରେ ନିଜେ ଲଜ୍ଜାରେ ସଢ଼ିଯାଆନ୍ତେ । ମାତ୍ର ସ୍ୱାର୍ଥସର୍ବସ୍ୱ ସମାଜରେ ଆମେ ତାକୁ ଜାଣି ଜାଣି ପାଶୋରି ପକାଇଥାଉ ।

ଚିତ୍ତଭାଇ ଆମ ଯୁଗର ଅମିଶ୍ର ଦିବ୍ୟ ଚେତନସତ୍ତା ପରି ଉଭା ହୋଇ ଆମ ଭିତରେ ଥିବା ଏଇ ଡେଇଁ ଶୋଇବାର ଅବିଗୁଣଗୁଡ଼ିକୁ କାଢ଼ିଦେବା ପାଇଁ ସତତ ବ୍ୟଗ୍ର । କାରଣ ମଣିଷ ପରି ମଣିଷ ହିଁ ତାଙ୍କର କାମ୍ୟ ।

*ଶ୍ରୀମତୀ ପ୍ରମିଳା କୁମାରୀ ସେଠୀ*

*ବିଶିନାବର, କଟକ, ମାର୍ଫତ୍- ଚୈତନ୍ୟ ପ୍ରସାଦ ସେଠୀ*

# ମୋ ଜୀବନର ମାର୍ଗଦର୍ଶକ

ଶ୍ରୀ ଚିତ୍ତରଂଜନ ଦାସଙ୍କ ସାନ୍ନିଧ୍ୟରେ ମତେ ପୂରା ୫ ବର୍ଷ କାଳ ରହିବାକୁ ସୁଯୋଗ ମିଳିଥିଲା । କିନ୍ତୁ ଆଜି ପର୍ଯ୍ୟନ୍ତ ଜୀବନରେ ଏହିପରି ଜଣେ ବହୁ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ ଦେଖିବାକୁ ମିଳିନାହିଁ । ଜଣେ ଆଦର୍ଶ ଶିକ୍ଷକ, ଜଣେ ସଚ୍ଚା ଗାନ୍ଧୀବାଦୀ, ମହାନ୍ ଦାର୍ଶନିକ, ଭାଷାବିଜ୍ଞାନୀ (ବହୁତ ଗୁଡ଼ିଏ ଭାଷାର ଜ୍ଞାତା) ଲେଖକ ଓ ସାହିତ୍ୟିକ ତଥା ଗରିବମାନଙ୍କର ପୃଷ୍ଠପୋଷକ ରୂପରେ ମୁଁ ତାଙ୍କୁ ଜାଣିଛି । ଜଣେ ବ୍ୟକ୍ତିଙ୍କ ଠାରେ ଏକ ସଙ୍ଗେ ଏତେ ସବୁ ଗୁଣ ରହିବା ଆଜିକାଲିର ଯୁଗରେ ସମ୍ଭବ ବୋଲି ବିଶ୍ୱାସ ହେଉ ନାହିଁ । ଆମେ ଆମ ବିଦ୍ୟାର୍ଥୀ ଜୀବନରେ ତାଙ୍କୁ Intellectual Giant ନାମରେ ଡାକୁଥିଲୁ ଓ ତାଙ୍କର Tutorial Groupରେ ଆମେମାନେ ଯେତକ ଛାତ୍ରଥିଲୁ ସମସ୍ତେ ତାଙ୍କ ସାଥିରେ ଏକାଠି ଘର ଭିତରେ ପଢ଼ାପଢ଼ି କରୁଥିଲୁ । ସେ ଆମ ପାଇଁ ଲାଇବ୍ରେରୀରୁ ବହି ଆଣୁଥିଲେ । ବୋଧେ ଆମେ ତିନି ଜଣ ସବୁଠାରୁ ଗରିବ ଶିକ୍ଷାର୍ଥୀ ଭାବରେ ଗଣାଯାଉଥିଲୁ । ମୋର ଭୋଜନ ଖର୍ଚ୍ଚ ସେ ବହନ କରୁଥିଲେ । ଏହା ତାଙ୍କର କୃପାର ଫଳ ଯାହାଦ୍ୱାରା କି ସେତେବେଳେ ତାଙ୍କର Tutorial Groupରେ ଥିବା ମିଷ୍ଟର ଓ.ପି. ଗୁପ୍ତା ଏବେ B.H.Uରେ Sociologyର Professor ଅଛନ୍ତି ଏବଂ ଶ୍ରୀ ବି.ଡ଼ି. ଶର୍ମା International Cooperative Allianceରେ ଅଛନ୍ତି ତଥା ମୁଁ (ଶ୍ରୀ ସଦନ ମିଶ୍ର) ରଚନାତ୍ମକ କାର୍ଯ୍ୟକ୍ରମ ଆଡ଼କୁ ଢ଼ଳିଛି ।

ବିଦେଶରେ ଶିକ୍ଷା ପାଇଥିବା ଏହି ବ୍ୟକ୍ତି ଜଣକ ଦେଶର ପ୍ରସିଦ୍ଧ ଶିକ୍ଷାସଂସ୍ଥା ବିଶ୍ୱଭାରତୀ ୟୁନିଭରସିଟିର ଛାତ୍ର ଥିଲେ । ସ୍ନାତକମାନଙ୍କ ପାଇଁ ଯେତେବେଳେ କୁର୍ତ୍ତା, ପାଇଜାମାରେ ପ୍ରଥମ ଥର Rural Instituteରେ Social psychologyରେ ଶ୍ରେଣୀ ନେଉଥିବାର ମୁଁ ତାଙ୍କୁ ଦେଖିଲି ସେତେବେଳେ ତାଙ୍କର ନିରାଡ଼ମ୍ବରତା ତଥା ସରଳତା ମୋର ମନକୁ ମୋହିନେଲା । ମୋର ଦ୍ୱିତୀୟ ଆକର୍ଷଣ ତାଙ୍କ ପ୍ରତି ହୋଇଥିଲା ଯେତେବେଳେ ମୁଁ ତାଙ୍କର

ହିମାଳୟ ପ୍ରେମ ଦେଖିଛି । ମତେ ସେହି ମହାନ୍ ଚିନ୍ତକଙ୍କ ସାଥିରେ ବର୍ଷେ ଦୁଇବର୍ଷ ପାଖାପାଖି ଛୁଟିମାନଙ୍କରେ ହିମାଳୟ ଭ୍ରମଣ ଅର୍ଥାତ୍ - ବଦ୍ରିନାଥ, କେଦାରନାଥ, ଗଙ୍ଗୋତ୍ରୀ, ଯମୁନୋତ୍ରୀ ତଥା ଗୋମୁଖ ଯାତ୍ରା ସମୟରେ ଏକ Interpreter ଭାବରେ ଯିବାଲାଗି ସୁଯୋଗ ମିଳିଥିଲା । ତାଙ୍କର ଏହି ଯାତ୍ରାର ଫଳସ୍ୱରୂପ ଓଡ଼ିଆରେ ପ୍ରକାଶିତ ହୋଇଥିଲା ତାଙ୍କର ପୁସ୍ତକ 'ଶୀଙ୍କାତୀର୍ଥ' । ସେହି ହିମାଳୟ ଯାତ୍ରା ସମୟରେ ତାଙ୍କ ମଧ୍ୟରେ ଏକ ମହାନ୍ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱର ଦର୍ଶନ ମୁଁ କରିଥିଲି ।

ଯେତେବେଳେ ସେ ମୋତେ ସାଥିରେ ନେଇ ନିଜର ସବୁ ଜିନିଷପତ୍ର ନିଜ ପିଠି ଉପରେ ଲଦି କରି, ଲୋକଙ୍କର ବିଭିନ୍ନ ପ୍ରକାରର ଆଶଙ୍କାକୁ ପଛରେ ପକାଇ- 'ଗୋମୁଖ'ର ତୁଷାର ସ୍ରୋତ ଅଭିମୁଖେ କଠିନ ଯାତ୍ରା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ, ସେତେବେଳେ ତାଙ୍କର ସାହସକୁ ଦେଖି ଗଙ୍ଗୋତ୍ରୀରେ ସବୁଲୋକ ଆଚମ୍ଭିତ ହୋଇ ରହିଗଲେ । ଏହି ମଣିଷଟି ମଧ୍ୟରେ ସତରେ କେତେ ବଡ଼ ଆତ୍ମବଳ ରହିଥିଲା !

ଆଜିକାଲି କୌଣସି ଆଦର୍ଶବାଦୀ ବ୍ୟକ୍ତିଙ୍କ କଥା ଯେବେ ମୁଁ ଶୁଣିବାକୁ କିମ୍ୱା ପଢ଼ିବାକୁ ପାଏ ତେବେ ଆମମାନଙ୍କର 'ଦାସଦାଦା'ଙ୍କ ବ୍ୟକ୍ତିତ୍ୱ ସାଥିରେ ସେହି ବ୍ୟକ୍ତିଙ୍କର ତୁଳନା କରିବାକୁ ଭୁଲେ ନାହିଁ । କିନ୍ତୁ ଆଜିକାଲିର ଯେଉଁ ଆଦର୍ଶବାଦୀ, ଗାନ୍ଧୀବାଦୀ, ବିଚାରକ ତଥା ଲେଖକ ମାନଙ୍କସଂପର୍କରେ ମୁଁ ଆସିଛି ସେମାନେ ପ୍ରତ୍ୟେକ ଆମମାନଙ୍କର 'ଦାସଦାଦା'ଙ୍କ ସହିତ ପ୍ରତିଯୋଗିତାରେ ନ୍ୟୁନ ହିଁ ଦେଖାଯାନ୍ତି ।

ସେ ଜର୍ମାନୀରେ ଥିଲାବେଳେ ମତେ ପ୍ରତିଥର ଚିଠି ଲେଖୁଥିଲେ । ଯେତେବେଳେ ମୁଁ ଭଲ ଚାକିରିଟିଏ ଖୋଜାଖୋଜି କରୁଥିଲି, ସେତେବେଳେ ଗୋଟେ ଚିଠି ପାଇଥିଲି । ତାଙ୍କ ଚିଠିର ସେହି ଧାଡ଼ି କେତୋଟି ମୋର ଆଜିବି ମନେ ପଡ଼ିଯାଉଛି ।

ସେ ଲେଖିଥିଲେ :—

Sadan, I do not know the art of job hunting and job finding, but I am here to advise, to guide and to provide you. ସେତେବେଳେ ମତେ ଲାଗିଲା କି ତାଙ୍କ ଭଳି ବ୍ୟକ୍ତି ତ କୌଣସି ପ୍ରକାର ମହତ୍ୱାକାଂକ୍ଷା ନ ରଖି ଶେଷରେ ତାଙ୍କର ଡିଗ୍ରୀ ସବୁକୁ ଚିରିକରି ଫିଙ୍ଗି ଦେଇଥିଲେ । ଆଉ ଯଦି ବି କିଛି ମହତ୍ୱାକାଂକ୍ଷା ରଖିଥାନ୍ତି ତେବେ ତାହା ହେଉଛି

କେବଳ ସେବାର, ଜ୍ଞାନର ତଥା ଭଗବାନଙ୍କଠାରେ ଭକ୍ତିର। ତେବେ ମୁଁ କାହିଁକି ଚାକିରି ପଛରେ ପଡ଼ିବି? କାହିଁକି ସେବାର କ୍ଷେତ୍ର ବାଛିବି ନାହିଁ? ତାଙ୍କରି ପ୍ରେରଣା ଦ୍ୱାରା ମୁଁ ମୋର ସେବାର ପଥ ବାଛିନେଲି। ମତେ ଏହି କଥାରେ ଅସୀମ ଆନନ୍ଦ ଲାଗୁଛି ଯେ ମୁଁ ଠିକ୍ ରାସ୍ତା ବାଛିଛି। ମତେ ମୋ ଜୀବନରେ ପ୍ରକୃତ ଗୁରୁଙ୍କର ପ୍ରକୃତ ମାର୍ଗଦର୍ଶନ ମିଳିଛି। ମୁଁ ଖାଲି ନୁହେଁ, ମୋର ଅନ୍ୟ ଦୁଇଜଣ ମିତ୍ର ବି ଆଜି ଯାହା ହୋଇଛନ୍ତି କେବଳ ସେହି ମହାନ୍ ବ୍ୟକ୍ତିଙ୍କ ପାଇଁ। ଭଗବାନ୍ ମୋର ସେହି ମାର୍ଗଦର୍ଶକ ତଥା ଗୁରୁଙ୍କୁ ଚିରାୟୁ ରଖନ୍ତୁ। ମୋର ସେହି ଗୁରୁ କର୍ମ, ଜ୍ଞାନ ତଥା ଭକ୍ତିର ଯେଉଁ ସଂଯୋଗ ଅଟନ୍ତି – ତାହା ସମସ୍ତ ଶିକ୍ଷକଙ୍କର ଆଦର୍ଶ ହେଲେ ଏହି ଭାରତବର୍ଷ ପୁନର୍ବାର ଆପଣାର ଆଧ୍ୟାତ୍ମିକ ପରମ୍ପରା ତଥା ମାନବୀୟ ମୂଲ୍ୟକୁ ପୁନଃସ୍ଥାପନ କରିପାରିବ।

ସେହି ଉତ୍କଳର ବରପୁତ୍ର ତଥା ମହାନ୍ ଗୁରୁଙ୍କ ଚରଣରେ ମୋର ଶତ ଶତ ନମସ୍କାର, ଶତ ଶତ ପ୍ରଣାମ।

*ସଦନ ମିଶ୍ର*
*ପାର୍ବତୀୟ ପର୍ଯ୍ୟାବରଣ ସଂରକ୍ଷଣ ସମିତି, ଉତ୍ତର ପ୍ରଦେଶ*

*(ଚିତ୍ତଭାଇଙ୍କ ୬୦ ତମ ଜନ୍ମ ଦିବସ ପାଳନ ଅବସରରେ ଅଧ୍ୟାପକ ଶ୍ରୀ ଚୈତନ୍ୟ ପ୍ରସାଦ ସେଠୀଙ୍କ ପାଖକୁ ହିନ୍ଦୀରେ ଲିଖିତ ଶ୍ରୀ ମିଶ୍ରଙ୍କ ଏକ ଚିଠିର ଉକ୍ତ ଲେଖାଟି ସଂଗୃହୀତ ଓ ଓଡ଼ିଆରେ ଅନୂଦିତ।)*

# ମୋ ଭାଇ ମୋ ବନ୍ଧୁ ମୋ ଗୁରୁ

ହଁ, ସେ ମୋର ଭାଇ, ଚିତ୍ତଭାଇ। ସହୋଦର ଭାଇ ଠାରୁ ବି ଅଧିକ ଅନ୍ତରଂଗ ସିଏ, ଅଧିକ ଆତ୍ମୀୟ ସିଏ ଓ ସବୁ ଠାରୁ ଆପଣାର ଭାଇ ସିଏ। ସେ ତ ବିଶ୍ୱଜନଙ୍କ ଆଦରର ଚିତ୍ତଦା, ଚିତ୍ତଭାଇ। ଏବଂ ସେ ମଧ୍ୟ ମୋର ବଂଧୁ, ପରମ ବଂଧୁ- ବିଶ୍ୱ ବଂଧୁ। ସେହିଁ ମୋ ଜୀବନର ଏକମାତ୍ର ଶ୍ରେଷ୍ଠ ଦିଗ୍‌ଦ୍ରଷ୍ଟା, ମହାନ୍ ଦାର୍ଶନିକ ଓ ସତ୍‌ପଥପ୍ରଦର୍ଶକ। ଗୋଟିଏ କଥାରେ ସେ ମୋ ଗୁରୁ।

ସେ ଯେ କେବଳ ମୋ ପାଇଁ ଭାଇ, ବନ୍ଧୁ, ଦାର୍ଶନିକ, ପଥପ୍ରଦର୍ଶକ ଓ

ପରମ ଗୁରୁ ତା ମୁଁ ଦମ୍ଭର ସହିତ କହିଲା ବେଳକୁ ମୋ ଆଗରେ ମୋର ଅବାଂଛିତ ଧୃଷ୍ଟତା ପରିଦୃଷ୍ଟ ହୋଇଯାଉଛି । କାରଣ ମୁଁ ମୋର ବହୁ ସହପାଠୀ, ସାଙ୍ଗ ସାଥୀ, ପରିଚିତ ଅନ୍ୟାନ୍ୟ ବହୁ ସ୍ତରର ଲୋକମାନଙ୍କ ପାଖରୁ ଅତି ଆବେଗଭରା ଅନୁଭୂତିପୂର୍ଣ୍ଣ ଭାଷାରେ ଚିତ୍ତଭାଇ ଯେ ସେମାନଙ୍କର ମଧ୍ୟ ଗୋଟାପଣେ ଭାଇ ବଂଧୁ, ଦାର୍ଶନିକ, ଗୁରୁ ଓ ପଥ ପ୍ରଦର୍ଶକ, ତାହା ବହୁବାର ଶୁଣିଛି ।

ଭାରତର ତଥା ଭାରତ ବାହାରର କେତେକ ବଂଧୁ, ଯେଉଁମାନେ ବେଶ୍ ପ୍ରତିଷ୍ଠିତ ଏବଂ ସମାଜରେ ଜଣେ କୃତବିଦ୍ୟ ବ୍ୟକ୍ତି ବୋଲି ସ୍ୱୀକୃତ; ସେମାନଙ୍କଠାରୁ ମଧ୍ୟ ବହୁ ପତ୍ର ମାଧ୍ୟମରେ ଚିତ୍ତଭାଇଙ୍କ ସଂପର୍କରେ ମୋରି ପରି ଅତି ଆପଣାର ଭାବୋଦ୍ଦୀପକ ଲେଖା ମୁଁ ଦେଖି ଅତ୍ୟନ୍ତ ବିସ୍ମିତ ହୋଇ ଏଇ ସିଦ୍ଧାନ୍ତରେ ଉପନୀତ ହେବାକୁ ଯାଉଛି ଯେ ପ୍ରକୃତରେ ସେ ତାଙ୍କ ସଂସ୍ପର୍ଶରେ ଆସିଥିବା ଏ ବିଶ୍ୱର ପ୍ରତିଟି ମଣିଷର ହୃଦୟରେ ନିଜର ଆସ୍ଥାନଟି ପ୍ରତିଷ୍ଠା କରିବାରେ ବେଶ୍ ସଫଳକାମ ହୋଇପାରିଛନ୍ତି । ଡେନ୍‌ମାର୍କର କେଉଁ ପ୍ରବୃଦ୍ଧ ପ୍ରଫେସରଙ୍କର ସେ "My dear learned Son" ତ, ଜର୍ମାନୀର କେଉଁ university ପ୍ରଫେସରଙ୍କର ଅତି ଆପଣାର ଚିତ୍ତଦା' । ଶାନ୍ତିନିକେତନର ତ ସବୁରି ପ୍ରିୟ ଚିତ୍ତଭାଇ ଓ ଚିତ୍ତଦା' ରୂପେ ସେ ବେଶ୍ ଜଣାଶୁଣା । ସତରେ ଜୀବନ ଯୁଦ୍ଧରେ ସେ ସବୁରିଙ୍କ ଭାଇ ହୋଇ ସତେ ଯେମିତି ଓଡିଆ ଢ଼ଗ ''ଯୁଦ୍ଧ ଯଦି କରିବସିବ ସଂଗେ ଥିବ ଭାଇ, ଦୁଧ ଯଦି ଖାଇବସିବ ଘରେ ଥିବ ଗାଈ''କୁ ସମସ୍ତଙ୍କ ପାଖରେ ସତ୍ୟ ବୋଲି ପ୍ରମାଣ କରି ଦେଖାଇ ଦେବାକୁ ସାରାଜୀବନ ପ୍ରୟାସ କରି ସଫଳ ହୋଇଛନ୍ତି ।

ମୋ ପାଇଁ ଏପରି ଯେଉଁ ବ୍ୟକ୍ତିତ୍ୱ, ଯିଏ ଅଗାଧ ଜ୍ଞାନ ସମୁଦ୍ରର ଅତି ଆକର୍ଷଣୀୟ ନୀଳ ଧୀରୋଦାତ୍ତ ମହାନ ବିସ୍ତୃତି- ତାଙ୍କ ବିଷୟରେ ମୁଁ କ'ଣ ବା ଲେଖିପାରିବି ଅଥବା କହିପାରିବି !! ତେଣୁ ଆଜି ମୁଁ ଯାହା କିଛି କହିବି ବା ଲେଖିବି ବୋଲି ସ୍ଥିର କରିଛି, ସେ ହୁଏତ ସମୁଦ୍ର ତଟର ବାଲୁକା ଶଯ୍ୟାରେ ଏତେ ଟିକି ବର୍ଣ୍ଣିଳ ଶିପପାଖୁଡ଼ା ପରି ଲାଗିବ ସିନା ସାମଗ୍ରିକ ହୋଇପାରିବ ନାହିଁ ।

ତାଙ୍କରି ପ୍ରତ୍ୟକ୍ଷ ପ୍ରେରଣାର ଇଙ୍ଗିତରେ (ଯାହା ତତ୍କାଳୀନ ଜୀବନ ବିଦ୍ୟାଳୟର ସବୁ ଛାତ୍ରଛାତ୍ରୀଙ୍କ ପାଇଁ ନିଆରା ଭାବେ ଅଭିପ୍ରେତ) ମୋ ଛାତ୍ର ଜୀବନର ଯଥାର୍ଥ ଉନ୍ମେଷ ହୋଇଛି । ତାଙ୍କରି ସ୍ପର୍ଶରେ ମୋ ଜୀବନଧାରାର ଅଙ୍କୁରୋଦ୍‌ଗମ ଠାରୁ ଆରମ୍ଭ କରି ପଲ୍ଲବିତ ପୂର୍ଣ୍ଣ ବୃକ୍ଷଟିଏ ପର୍ଯ୍ୟନ୍ତ ଏଯାବତ୍ ଅତିକ୍ରାନ୍ତ ବୟସର ମଣିଷଟିଏ ହୋଇ ଠିଆ ହେବାର ଇତିହାସ- ମୋ ଜୀବନର

ଇତିହାସ ବୋଲି ଆଜି ମୁଁ ସ୍ପଷ୍ଟ ଭାବେ କହିବି । ମୁଁ ନିଜ ଗୋଡ଼ରେ ଠିଆ ହୋଇଛି କେବଳ ତାଙ୍କରିପାଇଁ । ମୁଁ ମଧ୍ୟ କବି ହୋଇଛି ତାଙ୍କରି ପାଇଁ । ଏ ସଂପର୍କରେ ଗୋଟିଏ କଥା କହିବା ପାଇଁ ଅତି ଲୋଭ ଲାଗୁଛି । ଜୀବନ ବିଦ୍ୟାଳୟରେ ପାଠ ପଢୁଥିଲା ସମୟରେ ମୁଁ ଆମ ସ୍କୁଲର ହାତଲେଖା ପତ୍ରିକା (ଯେଉଁଥିରେ ଓଡ଼ିଶାର ଅନେକ ପ୍ରତିଷ୍ଠିତ କବି କଳାକାର ମାନଙ୍କର କୃତି ବାହାରୁ ଥିଲା)ରେ କାହିଁକି ଲେଖୁନାହିଁ ବୋଲି ଚିତ୍ତଭାଇ ପଚାରିବାରୁ, ମୁଁ କହିଲି, "ମୋ କବିତା କ'ଣ ସମସ୍ତଙ୍କୁ ଭଲ ଲାଗିବ ? ତେଣୁ ମୁଁ ଗୋଟେ କ'ଣ ଲେଖିବି ?" ସେ ସବୁତକ କଥା ମୋର ତୁନିଟି ହୋଇ ଶୁଣିଲେ ଓ ଧୀରେ ତାଙ୍କର ସ୍ୱଭାବସୁଲଭ ଆପଣାର କରିନେବାର ଭାଷାରେ ଏତିକି କହିଲେ, "ହଇରେ ସମସ୍ତେ ତମକୁ ରାନ୍ଧିବାଢ଼ି ସୁସ୍ୱାଦୁ ତରକାରୀ ଦେଇ ଚାଲିଯାଉଥିବେ ଓ ତମେ ଖାଲି ତାକୁ ଚାଟି ଚୁଟି ଖାଉଥିବ ଓ ଆନନ୍ଦିତ ହେଉଥିବ, ଅଥଚ ତମେ ତମ ତରକାରୀ ଟିକେ·କାହାକୁ ପରଶି ଦେବନାହିଁ ?" ତା'ପରେ ଧୀରେ ଉଠି ତାଙ୍କ କାମରେ ସେ ଅନ୍ୟତ୍ର ଚାଲିଗଲେ । ସେଇତକ ସେ ଏଭଳି ଭାବରେ କହିଲେ, ଯାହା ମୋ ହୃଦୟରେ ଭେଦି ଯେମିତି ଏକ ଅଭୂତପୂର୍ବ ଆବେଗ ସୃଷ୍ଟି କଲା ଓ ମୋତେ ଲେଖା ଲେଖି କରି ସବୁ ପତ୍ରପତ୍ରିକାକୁ ତାହା ପଠାଇବା ପାଇଁ ଏକ ଦୁର୍ବାର ପ୍ରେରଣା ଦେଲା, ଯାହା ଏଯାବତ୍ ମଧ୍ୟ ମୋ ଭିତରେ ସଦା ଜାଜ୍ଜ୍ୱଲ୍ୟମାନ ହୋଇରହିଛି । ସେଇଥିପାଇଁ ମୋର ପ୍ରଥମ କବିତା ସଂକଳନ 'ପଦ୍ମପଲାଶ' ମୁଁ ତାଙ୍କରି ପାଦ ତଳେ ଉତ୍ସର୍ଗ କରିଛି ।

ଜଣେ ମାନବବାଦୀ ସଦ୍‌ଗୁରୁ ହିସାବରେ, ମଣିଷ ପିଲାକୁ ମଣିଷ ପରି ଗଢ଼ି ତୋଳିବାର ସଚ୍ଚା ଶିକ୍ଷା କାରିଗର ଭାବରେ ସେ ପ୍ରତ୍ୟେକ ଛାତ୍ର ଜୀବନର ସକଳ ସଂଭାବନାକୁ ଅସାଧାରଣ ମନସ୍ତତ୍ତ୍ୱବିଦ୍‌ର ଅନ୍ତର୍ଭେଦୀ ଦୃଷ୍ଟି ନେଇ ଆକଳନ କରନ୍ତି ଓ ତା ଭିତରେ ଥିବା ବଳବାନ୍ ସଂଭାବନାଟିକୁ actualize କରିବା ଦିଗରେ ସେ ଅତି ସୂକ୍ଷ୍ମଭାବରେ ଛାତ୍ରଟିର ଚେତନା କକ୍ଷଟିକୁ ଏପରି ସ୍ପର୍ଶରେ ଚଳ ଚଞ୍ଚଳ କରି ଦିଅନ୍ତି ଯେ ଛାତ୍ରଟି ତାର ନିଜସ୍ୱ ବ୍ୟକ୍ତିତ୍ୱଟିର ବିକାଶ ଦିଗରେ ସ୍ୱୟଂ ସଚେତନ ହୋଇଉଠି କାର୍ଯ୍ୟ କରି ଚାଲିଯାଏ । ମୋ ଭିତରେ ଥିବା କବି-ପ୍ରତିଭାର ବୋଧହୁଏ ଏଇ ପରି ଭାବରେ ସେଇ କାଳୁ ଉନ୍ମେଷ ଘଟିଛି ବୋଲି ମୋର ହୃଦବୋଧ ହୋଇଛି । ଜୀବନ ବିଦ୍ୟାଳୟରେ ଅଧ୍ୟୟନରତ ଥିବା ସେ ସମୟର ପ୍ରତ୍ୟେକଟି ଛାତ୍ର ସ୍ପଷ୍ଟ ଅନୁମାନ କରି ପାରିଥିଲେ ଯେ ଚିତ୍ତଭାଇ ଜଣେ ଏକବାରେ ଅନନ୍ୟ ଗୁରୁ ଯିଏ ପ୍ରକୃତରେ ମଣିଷ ସମାଜର ପୂର୍ଣ୍ଣତା ଆଣିବା

ଦିଗରେ ଉତ୍ସାହୀ ହୋଇ ମଣିଷ ଛୁଆକୁ ମଣିଷ ପରି ଗଢ଼ି ତୋଳିବାରେ ଏକ ଉତ୍ସର୍ଗୀକୃତ ଶିକ୍ଷାସେବାମୟ ଜୀବନ ବଞ୍ଚୁଛନ୍ତି ଏବଂ ଏବେ ମଧ୍ୟ ସେଇ ସଂକଳ୍ପ ତାଙ୍କୁ ସତେ ଯେମିତି ଆଚ୍ଛନ୍ନ କରି ରଖିଛି ଓ ତାଙ୍କର ସକଳ ପ୍ରକାରର ସାହିତ୍ୟସାଧନା, ଦର୍ଶନ, ଚିନ୍ତା ଓ ସମାଜସେବା ଭିତରେ ମଧ୍ୟ ସେ ନାନା ପାଠଚକ୍ର ଓ ଶିକ୍ଷାସଂଚାଳନ କାର୍ଯ୍ୟକ୍ରମ ଜରିଆରେ ସେଇ ଶିକ୍ଷାସେବା ପ୍ରବୃତ୍ତିର ପରିତୃପ୍ତି କରିଚାଲିଛନ୍ତି ।

ଶିକ୍ଷା କ'ଣ ଓ ଶିକ୍ଷା କିପରି ମନୁଷ୍ୟ ଗଠନର ଏକ ବଳିଷ୍ଠ ପ୍ରକ୍ରିୟା, ସମ୍ଭବତଃ ତାଙ୍କ ପରି କେହି ଏ ଯାଏ ଓଡ଼ିଶାରେ ବୁଝି ନାହାନ୍ତି ବା ସେ ଦିଗରେ କାର୍ଯ୍ୟକରି ଦେଖାଇ ପାରି ନାହାନ୍ତି । ଏପରି ଏକ ଅସୁଖ କଥା ଏଠି କହିବାର ମୋର ଅଭିପ୍ରାୟ ହେଉଛି ଯେ ଜୀବନ ବିଦ୍ୟାଳୟର ଶିକ୍ଷା ମାଧ୍ୟମରେ ସେ ଯେପରି ଭାବେ ଛାତ୍ରମାନଙ୍କର ସର୍ବାଙ୍ଗୀନ ଉନ୍ନତି ବିଧାନ ପାଇଁ ଅଭିନବ ପ୍ରଚେଷ୍ଟା କରିଥିଲେ, ତାହାକୁ ନାନା ଲୋକ ନାନା କାରଣ ଅକାରଣରେ ଆଖିବୁଜି ଦେଲେ । ଯାହା ଫଳରେ ସେପରି ଏକ ଉପାଦେୟ ଶିକ୍ଷାନୁଷ୍ଠାନ (ଯାହା ସମାଜର ସର୍ବନିମ୍ନ ସ୍ତରର ପିଲାମାନଙ୍କୁ ଅଂଧକାରରୁ ଉଠାଇଆଣି ଆଲୋକାଭିମୁଖୀ କରିପାରୁଥିଲା) ଅକର୍ମଣ୍ୟ ହୋଇଗଲା ।

ମୋର ଦୀର୍ଘ ଜୀବନର ଅଧ୍ୟାପକ ଜୀବନ ଭିତରେ ମୁଁ ମୋର ଛାତ୍ରମାନଙ୍କୁ ସେହି ଜୀବନ ବିଦ୍ୟାଳୟର ଶିକ୍ଷା ସମ୍ପର୍କରେ କହି ତାଙ୍କୁ ଉତ୍ସାହିତ କରିଛି ଓ ପ୍ରାୟ ପ୍ରତ୍ୟେକ ଛାତ୍ର ସେଇ କର୍ମାଭିମୁଖୀ ଶିକ୍ଷାର ପ୍ରୟୋଜନୀୟତାର ଅଭାବ ଅନୁଭବ କରୁଛନ୍ତି ବୋଲି ମୋତେ ବହୁବାର କହିଛନ୍ତି । ଚିତ୍ତଭାଇଙ୍କପରି ଅଣପାରଂପରିକ ରୀତିରେ ପିଲାଙ୍କୁ ପାଠ ପଢ଼ାଇବାର ଇଚ୍ଛା ନେଇ ମୁଁ ମଧ୍ୟ ପଢ଼ାଘର ବାହାରେ ପିଲାଙ୍କୁ ଏକାଠି କରି ପାଠ ପଢ଼ାଇବାର ସ୍ୱାଦ ଅନୁଭବ କରିଛି । ତାହା ଦ୍ୱାରା ପିଲାମାନେ ବେଶୀ ଉପକୃତ ହୋଇଛନ୍ତି ବୋଲି ଦେଖିଛି । ମାତ୍ର ଏସବୁକୁ ସରକାରୀ ଚାକିରୀ ଭିତରେ ସବୁ ଦିନ କରି ପାରିବାର ସୁବିଧା ସୁଯୋଗ ଓ ତଦ୍‌ଜନିତ ଚାହିଦାପରାକୁ ବେଖାତିର କରି ପାରୁଥିବା ଏକ ଟାଣ ମନୋବଳ ଅଭାବରୁ ସର୍ବଦା କରିପାରି ନଥିବାର ମନସ୍ତାପ ମଧ୍ୟ ଭୋଗିଛି । ଶିକ୍ଷା ସରକାରୀ କଳରେ ରହିଲେ ହିଁ ତା'ର ପ୍ରାଣ ଶକ୍ତି ହରାଇ ବସେ ସେଇଟା ମର୍ମେ ମର୍ମେ ଅନୁଭବ କରିଛି ।

ଚିତ୍ତଭାଇ ଆଦ୍ୟ ଯୌବନରେ ଜଣେ ସଚେତନ ପ୍ରାଜ୍ଞ ଭାବେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ବ୍ରିଟିଶ୍ ରାଜତ୍ୱର ଅରାଜକ ରୀତି ଅନୁଯାୟୀ

ସେ ଜେଲ ଯାଇଥିଲେ ଏବଂ ସଂଗ୍ରାମୀ ହୋଇଥିଲେ। ସେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷଙ୍କ ସଂସ୍ପର୍ଶରେ ଆସିଥିଲେ। ଗାନ୍ଧୀ, ନେହେରୁ, ଜୟପ୍ରକାଶ, ବିନୋବା ଇତ୍ୟାଦି ଦେଶପ୍ରେମୀମାନଙ୍କ ସହ ସ୍ୱାଧୀନତା ପାଇଁ କାର୍ଯ୍ୟ କରି ସେମାନଙ୍କର ଦେଶ ଗଠନ କରିବାର ଅଙ୍ଗୀକାରବଦ୍ଧତାକୁ ପୁଙ୍ଖାନୁପୁଙ୍ଖ ଭାବେ ନିଜ ଚେତନା ସ୍ତରରେ ସେ ମନନ କରିଥିଲେ। ନାନା ଦେଶ ବୁଲି ବିଶ୍ୱଶିକ୍ଷା ବାତାବରଣର ଅନୁଧ୍ୟାନ କରିଥିଲେ। ସେଇ ଅଧ୍ୟୟନ ଏବଂ ଅନୁଧ୍ୟାନରୁ ସମ୍ଭବତଃ ସେ ସ୍ଥିର କରିଥିବାର ଅନୁମାନ ହୁଏ ଯେ ସ୍ୱାଧୀନୋତ୍ତର ଭାରତୀୟ ତଥା ଓଡ଼ିଶା ଜନଜୀବନକୁ ସୁସଂହତ ସମାଜଟିଏ ଦେବାକୁ ହେଲେ ଦେଶକାଳ ପାତ୍ର ଅନୁକୂଳ ଶିକ୍ଷାପଦ୍ଧତି ଓ ଶିକ୍ଷାୟତନଟିଏ ନିହାତି ଜରୁରୀ ଅଟେ। ସଂଭବତଃ ସେଇଥିପାଇଁ ସେ ନିଜ ଅର୍ଜିତ ଜ୍ଞାନପୁଞ୍ଜିକୁ ଅନ୍ୟତ୍ର ସ୍ୱ ପେଟପାଟଣା ପୂର୍ତ୍ତି ଅର୍ଥେ ନ ଲଗାଇବାକୁ ପ୍ରଚଣ୍ଡ ପ୍ରତିଜ୍ଞାବଦ୍ଧ ହୋଇଥିଲେ। ଯା ଫଳରେ ଦେଶର ଜଣେ ବିଜ୍ଞ ପ୍ରଶାସକ ହେବାପାଇଁ ପଣ୍ଡିତ ନେହେରୁଙ୍କର ତତ୍କାଳୀନ ବହୁ ଅନୁରୋଧକୁ ସେ ପ୍ରତ୍ୟାଖ୍ୟାନ କରିଦେଇ ଶିକ୍ଷାକୁ ଦେଶ ସେବାର ମାଧ୍ୟମ ଗ୍ରହଣ କରି ଚମ୍ପଝିମୁଣ୍ଡା ଜୀବନ ବିଦ୍ୟାଳୟରେ ମନୋନିବେଶ କରିଥିଲେ।

ଜୀବନ ବିଦ୍ୟାଳୟରେ ଅର୍ଥ ଉପାର୍ଜନ କରିବା ଇଚ୍ଛାରେ ବା କାହାର ବାଧ ବାଧକତାରେ ଜଣେ ଶିକ୍ଷକ ଜୀବନକୁ ସେ ଗ୍ରହଣ କରିନଥିଲେ। ଶିକ୍ଷକଟିଏ, ଗୁରୁଟିଏ ହୋଇ ମଣିଷ ଗଢ଼ିବାର ସ୍ୱପ୍ନ ନେଇ ସେ ଜୀବନ ବିଦ୍ୟାଳୟକୁ ଆପଣାର କରି ଆସିଥିଲେ। ସେଇଥିପାଇଁ ହୁଏତ ଅତି ସହଜ ଢ଼ଙ୍ଗରେ ଜଙ୍ଗଲି ଚିଠି ଲେଖୁ ଲେଖୁ ସେଥିରେ ଲେଖି ପକାଇଛନ୍ତି- ''ଶିକ୍ଷକ ହେବାକୁ ଭଲ ପାଏ ବୋଲି ହିଁ ମୂଳତଃ ମୁଁ ଶିକ୍ଷକ ହୋଇଚି। ଶିକ୍ଷକ ନ ହୋଇ ମୁଁ ଯେ ଆଉ କ'ଣ ହୋଇପାରିଥାନ୍ତି, ଜୀବନରେ ଅଧେ ରାସ୍ତା ଚାଲି ଆସିବା ପରେ ମଧ ମୁଁ ସେକଥା କହିପାରିବି ନାହିଁ। ଚମ୍ପଝିମୁଣ୍ଡାରେ (ଜୀବନ ବିଦ୍ୟାଳୟରେ) ଚାରିବର୍ଷ ଶିକ୍ଷକତା କରିଚି। ଆଗ୍ରାର ଉପକଂଠରେ ଥିବା ଏହି ବୃହତ ଅନୁଷ୍ଠାନରେ ମଧ ଶିକ୍ଷକତା କରିବା ମୋର ଚାରିବର୍ଷରୁ ଉର୍ଦ୍ଧ୍ୱ ହୋଇଗଲା। ଏହା ବ୍ୟତୀତ ଅବସର ଅନୁସାରେ ଦେଶରେ ବିଦେଶରେ ମୁଁ କେତେଥର ଶିକ୍ଷକତା କରିଚି। ପିଲାଙ୍କ ସ୍କୁଲରେ ମାଷ୍ଟର ହୋଇଚି। ବଡ଼ଙ୍କ ମେଳରେ ଅଧ୍ୟାପକ ବି ହୋଇଚି। ମଣିଷ ତା' କାମରୁ କେବଳ ପଇସା ଚାହେଁ ନାହିଁ, ତୃପ୍ତି ଚାହେଁ। ମୋର ଶିକ୍ଷକ ଜୀବନରେ ଚମ୍ପଝିମୁଣ୍ଡା ପରି ଅନ୍ୟ କେଉଁଠି ଏତେ ତୃପ୍ତି ପାଇନାହିଁ।'' (ଜଙ୍ଗଲ ଚିଠି-ପ୍ରଥମ ସଂସ୍କରଣ, ପୃ୧୩୧)

ଜଣେ ହୃଦୟବାନ୍ ମାନବବାଦୀ ଶିକ୍ଷକ ହିସାବରେ ମଣିଷ ପିଲାର ଅନ୍ତର୍ନିହିତ ମହତ୍ ସମ୍ଭାବନା ଗୁଡ଼ିକୁ ଆବିଷ୍କାର କରି ପିଲାଟିକୁ ଚିହ୍ନାଇ ଦେବାର ଯେଉଁ ମନସ୍ତାତ୍ତ୍ୱିକ ପ୍ରଣାଳୀଟି ଚିତ୍ତଭାଇ ଆପଣେଇ ନେଇଛନ୍ତି ତାହା ଅନନ୍ୟ। ଜୀବନ ବିଦ୍ୟାଳୟରେ ପ୍ରତ୍ୟେକ ଛାତ୍ର ଅନୁଭବ କରିଥାନ୍ତି ଯେ ସତେ ଯେମିତି ଚିତ୍ତଭାଇ ସେମାନଙ୍କର ଚେତନ, ଅଚେତନ ତଥା ଅବଚେତନର ସକଳ ସ୍ତରରେ, ଅତିସ୍ୱାଭାବିକ ଭାବରେ ସଂଚରି ଯାଇଛନ୍ତି। ଯାହାର ଫଳସ୍ୱରୂପ ସେମାନଙ୍କର ବିଦ୍ୟାର୍ଥୀ ଜୀବନରେ ଅଧିକରୁ ଅଧିକ ଜାଣିବାର ଆସ୍ପୃହା କ୍ରମଶଃ ବଢ଼ି ଚାଲୁଥିବାର ସେମାନେ ଅନୁଭବ କରନ୍ତି। ନିଜ ଅଧ୍ୟୟନର ସଠିକ ଦିଗ୍‌ଦର୍ଶନ ଲାଭ କରିପାରିବା ସହିତ ନିଜକୁ ଓ ନିଜ ଭିତରେ ସଂଭାବନାଗୁଡ଼ିକୁ ଫୁଟେଇ ପାରିବାର ଅନ୍ତର୍ନିହିତ ଶକ୍ତି ଓ ସାହସ ଲାଭ କରିପାରନ୍ତି। ଚିତ୍ତଭାଇଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରେରଣା ଛାତ୍ରଟିର ଅଧ୍ୟବସାୟରେ ଏହିପରି ସାହାଯ୍ୟ କରିଥାଏ ବୋଲି ମୋର ସେଇଦିନୁ ଏକ ଦୃଢ଼ ବିଶ୍ୱାସ ହୋଇଯାଇଛି।

ମୁଁ ପାଠ ପଢ଼ିଲି। ପୁଣି ଦର୍ଶନଶାସ୍ତ୍ର ଅଧ୍ୟୟନ କରି ସେଥିରେ ଅଧ୍ୟାପନା କରିବାର ସଂକଳ୍ପ ନେଲି କେବଳ ତାଙ୍କର ପରୋକ୍ଷ ପ୍ରେରଣାରେ। କାରଣ ସେ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଯେପରି ଆମକୁ ଉପନିଷଦ ପଢ଼ାଉଥିବା ବେଳେ ଭାରତୀୟ ଦର୍ଶନର ସମ୍ୟକ୍ ସୂଚନା ଦେଇ Indian Philosophy ଯେ ପ୍ରକୃତ philosophy ଏହା ସ୍ପଷ୍ଟ ଭାବେ ବୁଝାଇ ଦେଇ ତହିଁର ଗଭୀରତାକୁ ପ୍ରବେଶ କରିବାପାଇଁ ପ୍ରେରଣା ଦେଇଥିଲେ। ସେଇ ଉପନିଷଦ କ୍ଲାସ କରିବା ଏକ ଅନନ୍ୟ ଅନୁଭୂତି।

ଚମ୍ପତିମୁଣ୍ଡା ଉତ୍ତର ମୌଳିକ ଜୀବନ ବିଦ୍ୟାଳୟର ପ୍ରିନ୍ସପାଲ ହିସାବରେ ପିଲାଙ୍କୁ ପାଠ ପଢ଼ାଇବା ସହିତ ସେମାନଙ୍କର ଭଲ ମନ୍ଦର ତତ୍ତ୍ୱ ନେଇ ସ୍କୁଲ ପରିଚାଳନା କରିବାର ଗୁରୁ ଦାୟିତ୍ୱ ସହ ସେ ଆମକୁ ଉପନିଷଦ ପଢ଼ାଇବାକୁ ଦିନଭରି ସମୟ ପାଆନ୍ତି ନାହିଁ। ତେଣୁ ଶୀତଦିନେ ଭୋର ବେଳା ତିନିଟାରୁ ଚାରିଟା ଭିତରେ ଆମ ସମସ୍ତଙ୍କୁ ନିଦରୁ ଉଠାଇ ଦିଅନ୍ତି ଓ ଘର ବାହାରେ କାଠ ଗଣ୍ଡି ମାନଙ୍କରେ ଗତ ସଂଧ୍ୟାରୁ ଶୀତ ଛଡ଼ାଇବା ପାଇଁ ନିଆଁ ଧରା ହୋଇଥିବା ସ୍ଥାନରେ ନିଆଁକୁ ବେଢ଼ି ବସିବା ପାଇଁ ଆମକୁ କହନ୍ତି। ଆମେ ତେଣୁ ଖାତା କଲମ ଧରି ନିଆଁକୁ ବେଢ଼ି ବସୁ ଓ ସେ ଉପନିଷଦ (କଠ, କେନ, ଈଶ, ଛାନ୍ଦୋଗ୍ୟ ଉପନିଷଦ ଇତ୍ୟାଦି) ଗୋଟିକ ପରେ ଗୋଟିଏ ଆଲୋଚନା କରିଚାଲନ୍ତି। ଆମେ ସମସ୍ତେ ନୋଟ୍ କରିଚାଲୁ। ପ୍ରତିଟି ଶ୍ଲୋକର ଭାବାର୍ଥ ସହିତ

ବେଶ୍ ସାରଗର୍ଭକ ମର୍ମସ୍ପର୍ଶୀ ଆଲୋଚନା ଚାଲେ । ଏବେ ମୋର ସ୍ପଷ୍ଟ ମନେପଡୁଛି ଯେ ସେ କଠୋପନିଷଦ ପଢ଼ାଉଥିଲାବେଳେ ଆତ୍ମା, ପରମାତ୍ମା, ବ୍ରହ୍ମଦର୍ଶନର ସୂକ୍ଷ୍ମତତ୍ତ୍ୱ ଏପରି ସରଳ ଓ ହୃଦୟଗ୍ରାହୀ ଭାବେ ପଢ଼ାଇ ନୋଟ୍ ଦେଉଥିଲେ ଯାହାକୁ ମୁଁ ପରବର୍ତ୍ତୀ କାଳରେ ତହିଁରେ କିଞ୍ଚିତ୍ ସଂଯୋଗକରି କେବଳ ଇଂରାଜୀରେ ମୋ ଛାତ୍ରମାନଙ୍କୁ ପଢ଼ାଇ ଆତ୍ମତୃପ୍ତି ଲାଭ କରିଛି ଓ ପିଲାମାନେ ମଧ୍ୟ ଅନ୍ୟାନ୍ୟ ଆଲୋଚନା ଠାରୁ ଏପରି ଆଲୋଚନା ହୃଦୟସ୍ପର୍ଶୀ ବୋଲି କହି ଗ୍ରହଣ କରି ନେଇଛନ୍ତି ।

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକୌ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାଷା ସର୍ବମିଦଂ ବିଭାତି ।।

କଠୋପନିଷଦର ଏହି ଶ୍ଳୋକଟିକୁ ସେ ବ୍ୟାଖ୍ୟା କଲାବେଳେ ଆମକୁ ଲାଗୁଥିଲା ସତେ ଅବା ଚିଉଭାଇ "ବ୍ରହ୍ମବିଦ୍ ବ୍ରହ୍ମୈବଭବତି" ହୋଇଯାଇଛନ୍ତି !! ଭାରତୀୟ ଦର୍ଶନ ଓ ସର୍ବୋପରି ବିଶ୍ୱର ଅନ୍ୟାନ୍ୟ ବହୁ ଧର୍ମ ଓ ଦର୍ଶନରେ ପାଣ୍ଡିତ୍ୟ ସହିତ ତାଙ୍କର ସଂସ୍କୃତ ଭାଷାରେ ଏପରି ଅଗାଧ ପ୍ରବେଶ ଆମକୁ ସେତେବେଳେ ସତରେ ଅବାକ୍ ଓ ବିସ୍ମିତ କରି ଦେଉଥିଲା । ସରଳ ଓଡ଼ିଆରେ ଦର୍ଶନର ଜଟିଳ ତତ୍ତ୍ୱ ଏପରି ବ୍ୟାଖ୍ୟା କରାଯାଇପାରେ ତାହା ମୁଁ ମନେ ମର୍ମେ ଅନୁଭବ କରିପାରିଥିଲି ତାଙ୍କରି ଉପନିଷଦ କ୍ଲାସରେ । ଜଂଗଲ ଭିତରେ ସେ କାଳରେ ଯେଉଁ ହାଡ଼ଥରା ଶୀତ ସକାଳୁ ଉପନିଷଦ ପଢ଼ିଲାବେଳେ କେଉଁ ଆଡ଼େ ଯେ ଆମକୁ ଛାଡ଼ି ଚାଲିଯାଏ- ଜଣାଯାଏନି । ଚିଉଭାଇ ପୁଣି ପରଦିନ ପାଠ ପାଇଁ ଉତ୍କଣ୍ଠାର ଖିଅଟି ଲମ୍ୱେଇ ଦେଇ କ୍ଲାସ ଶେଷ ହେଲାବୋଲି କହନ୍ତି ଓ ଉଠି ଚାଲିଗଲା ପରେ ପୁଣି ଶୀତ ଲାଗେ, ସତେ ଅବା ଚିଉଭାଇଙ୍କ ଯାଦୁକରୀ ବିଦ୍ୟା ଶୀତ ଛଡାଇଦିଏ, ପୁଣି ଶୀତ ଲଗେଇ ଦିଏ !!

ଜଣେ ସଚ୍ଚା ଶିକ୍ଷକ ତାଙ୍କ ନିଜ ଛାତ୍ରମାନଙ୍କର ସର୍ବାଙ୍ଗୀନ ଉନ୍ନତି କଳ୍ପେ ସଦା ଜାଗ୍ରତ ପରି ସେ କାର୍ଯ୍ୟ କରିଚାଲିଥାଆନ୍ତି । କାହାର କେଉଁଠି ଅବାଟ ବାଟର ଦ୍ୱନ୍ଦ, ବୋଲଣା ଅବୋଲଣା ଦେଖିଲେ ଆକଟ କରନ୍ତି । ପ୍ରଚଳିତ ଶିକ୍ଷା ପଦ୍ଧତିରେ ସେ ଲାଗି ବହୁ ଦଣ୍ଡର ମଧ୍ୟ ଉତ୍କଟ ପ୍ରଦର୍ଶନ ଅଛି । ମାତ୍ର ଚିଉଭାଇ କାହିଁ କେଉଁଦିନ କାହାକୁ ନାଲି ଆଖି ଦେଖାଇ ଆକଟ କରିବା ବା ତାଗିଦ୍ କରିବା ମୁଁ ଏଯାଏ ଦେଖିନାହିଁ । ଅଥଚ ଆମ ଜୀବନ ବିଦ୍ୟାଳୟରେ ସେଇ କାର୍ଯ୍ୟପାଇଁ ସେ କିନ୍ତୁ ଅଲଗା ଅନନ୍ୟ ଏକ ପଦ୍ଧତି ଅନୁସରଣ କରୁଥିଲେ ଓ ସେଥିରେ ସେ ବେଶ୍ ସଫଳତା ଲାଭ କରିପାରିଥିଲେ । ଜଣେ ପ୍ରବୀଣ ମନସ୍ତତ୍ତ୍ୱବିଦ୍ ଶିକ୍ଷକ

ହିସାବରେ ସେ ଆମ ବିଦ୍ୟାଳୟର ପ୍ରତିଟି ଛାତ୍ରର  ନଖରୁ ନାସିକା ଯାଏ ସେଠିକାର ଦୈନନ୍ଦିନ ଜୀବନ ଖସଡ଼ାରେ ମାର୍କ କରୁଥିଲେ। ପ୍ରତ୍ୟେକ ଛାତ୍ରର ଦିନଲିପିକୁ ଗଭୀର ଭାବେ ଅନୁଧ୍ୟାନ କରୁଥିଲେ। ଯେଉଁଠି ଯାହାର ଅପୂର୍ଣ୍ଣତା, ବେଢ଼ଙ୍ଗ ବା ଅବାଟ ଚଲା ଦେଖାଯାଉଥିଲା ପ୍ରତିମାସ ଶେଷରେ ବା ତିନି ମାସରେ ଥରେ ଲେଖାଏଁ ସେ ଛାତ୍ର ଚିତ୍ତଭାଇଙ୍କ ଠାରୁ ଚିରୁକୁଟି ଖଣ୍ଡକରେ ଅତି କମ ଶବ୍ଦରେ ଅତି ତାର୍ଯ୍ୟକ ଭାବେ ଲିଖିତ ଦି ତିନି ଧାଡ଼ିରେ ଲେଖାଟିଏ ପାଉଥିଲେ। ସେତକ ସେ ପଢ଼ି ତା ନିଜକୁ ସଜାଡ଼ି ଆଣିବାରେ ପ୍ରଯତ୍ନ କରୁଥିଲା। ଏପରି ଲେଖା ଚିତ୍ତଭାଇ ଖୁବ୍ ଅପ୍ରତ୍ୟାଶିତ ଭାବରେ ଚୁପ୍‌କିନା ଆମେ ଖେଳିଲା ବେଳେ ବା ବୁଲୁଥିଲା ବେଳେ ଆମ ପାଖକୁ ଆସି ଆମ ହାତରେ ଗୁଞ୍ଜି ଦେଇ ତାଙ୍କ ବାଟରେ ଚାଲି ଯାଉଥିଲେ। ଏପରି ଲେଖା ମୋ ଜୀବନରେ ସେଠି ମୁଁ ତିନି ଥର ପାଇଛି।

ମୁଁ ଜୀବନ ବିଦ୍ୟାଳୟରେ ପ୍ରବେଶ କରିବାର ତିନି ମାସ ପରେ (୧୯୫୭ ମସିହାରେ) ପ୍ରଥମ ଚିରୁକୁଟି ପାଇଲି। ସେଇଦିନଠାରୁ ମୁଁ ନିଜକୁ ଖୁବ୍ ସଂଯତ କରିବାକୁ ଚେଷ୍ଟା କରିଥିଲି। ମୋତେ ଲେଖାଯାଇଥିଲା- ''ତୁମର ଅକ୍ଷର ଅତି ଅସୁନ୍ଦର। ସେଥିରୁ ଜଣା ପଡ଼େ ଯେ ତୁମେ ପ୍ରକୃତରେ ଯେତେଟା ନୁହଁ, ବାହାରକୁ ସେତେଟା ଦେଖାଇବାକୁ ଚେଷ୍ଟା କର। ଭିତରେ ଭୟ ବି ରହିଚି। ବାହାରକୁ ଯେତେ ରଙ୍ଗ ଢ଼ଙ୍ଗ ହେଲେ ମଧ୍ୟ ତୁମ ଆଚରଣରୁ ଭୟଟା ବେଶ୍ ଧରାପଡ଼ିଯାଏ।'' ଏଇଠି ଆଉ କେତେ ଜଣଙ୍କର ଚିରୁକୁଟି ଦେଖାଯାଇପାରେ। କିଶୋରକୁ ଲେଖା ଯାଇଥିଲା। ''ମନର ସରସତା ଅନେକ ରହିଛି। ରଚନା ଶକ୍ତି ମଧ୍ୟ ଚମତ୍କାର। ମୁହଁ ଉପରେ ଅତୁଳ ବିସ୍ମୟର ଛାପ ରହିଛି। ବାଟ ପାଇଲେ ଅନେକ ଆଶା କରାଯାଇପାରିବ। ତୁମର ଅଧ୍ୟୟନ ଆହୁରି ବଢ଼ା। ହିନ୍ଦି ଓ ବଂଗଳା ଭାଷାକୁ ଆପଣାର  କରି  ନିଅ।''

କୁନ୍ତଳାକୁ : ୧- ସଂସାରରେ ଯିଏ ଆପଣାକୁ ଗେହ୍ଲା କରି ଶିଖେ, ସିଏ ଭଗବାନଙ୍କର ଗେହ୍ଲା ହୁଏନାହିଁ। ତୁମେ କେବେ ଭଗବାନଙ୍କର ପ୍ରିୟ ହୋଇରହିବ ? ୨- ମନକୁ ଆହୁରି ସ୍ଥିର କର। ଭଗବାନଙ୍କ ଠାରେ ବିଶ୍ୱାସ ରଖ। ରଚନା ପ୍ରବୃତ୍ତି ବଢ଼ାଅ। ତେବେ ତମର ମୁଣ୍ଡ ଆଉ ତୁମକୁ କଷ୍ଟ ଦେଇ ପାରିବ ନାହିଁ। ୩- ପ୍ରସ୍ତୁତି ହୋଇ ପାରିଲେ  ତୁମେ କେତେ ବିଦ୍ୟା ଯେ ଅର୍ଜନ କରନ୍ତ, ସ୍ଥିର ହୋଇ କେବେ  ସେ କଥା ଭାବିଚ କି ?'' (ଜଙ୍ଗଲ ଚିଠି - ୧୯୭୧ ପୃଷ୍ଠା- ୧୯୯-୨୦୦)।

ଚିତ୍ତଭାଇଙ୍କର ଏମିତି ଲେଖା ଖଣ୍ଡେ ମିଳିଗଲେ ସତରେ ମନ ଘର ଧରିଯାଏ। ନିଜକୁ ସୁଧାରି ନେବାର ଓ ନିଜ ଚରିତ୍ରର ସତ୍‌ମାର୍ଗ ଖୋଜିବାର ଆନ୍ତରିକ ଇଚ୍ଛା ବଳବତୀ ହୋଇଉଠେ। ମୋର ଅଧ୍ୟାପକ ଜୀବନରେ ମୁଁ ଏଇ ପଦ୍ଧତିର ଉପଚାର କରି ବହୁଳ ଭାବରେ ପିଲାମାନଙ୍କର ବିଶ୍ୱାସଭାଜନ ହୋଇଛି। ଅବଶ୍ୟ ଏପରି ଲେଖା ମାଧ୍ୟମରେ ନ ହେଲେ ମଧ୍ୟ ନିର୍ଦ୍ଦିଷ୍ଟ ପିଲାଙ୍କ ସହ କଥାବାର୍ତ୍ତା ହୋଇ ମୁଁ ଏପରି କହିପକାଏ। ଯା ଫଳରେ କଲେଜରେ ନୂଆ ନୂଆ ପାଦ ଦେଇ ଅମଣିଆ ହେଉଥିବା ଅନେକ ପିଲା ବେଶ୍ ବାଟକୁ ଆସିଛନ୍ତି। ଇଂରାଜୀରେ ଅଛି "A best teacher only inspires" ଏଇ ପଦକ ଚିତ୍ତଭାଇଙ୍କ ପାଖରେ ଆମେ ସମସ୍ତେ ମର୍ମେ ମର୍ମେ ଅନୁଭବ କରିଛୁ। ତାଙ୍କ ପ୍ରେରଣା, ଉତ୍ସାହ ଓ ଅନ୍ତର୍ନିହିତ ଆଶୀର୍ବାଦ ଆମ୍ଭେମାନେ ଲାଭ କରିବାର ଯେଉଁ ସୌଭାଗ୍ୟ ପାଇଛୁ ସତରେ ତାହା ବିରଳ। ଛାତ୍ରର ସମଗ୍ର ଚେତନାର ଭାବରୂପକୁ ସେ ଏପରି ଭାବରେ ନିରୀକ୍ଷଣ କରିପାରନ୍ତି ଯାହା ଅନ୍ୟ କୌଣସି ଶିକ୍ଷକ ପାଖରେ ମିଳିବା କଷ୍ଟକର ବ୍ୟାପାର ପରି ମନେହୁଏ। ଛାତ୍ରର ସେଇ ଚେତନା ଭାବରୂପୀ ଅଂଧାର ଘରର କେଉଁ ସୁଇଚ୍ ଅନ୍ କଲେ କେଉଁ ଆଲୋକରେ ସିଏ ତା ଚରିତ୍ରକୁ ଆଲୋକିତ କରିପାରିବ ତାହା ଚିତ୍ତଭାଇଙ୍କ ବ୍ୟତୀତ ସେଠି ଥିବା ଅନ୍ୟ ସହକାରୀ ଶିକ୍ଷକମାନଙ୍କ ପାଖରେ ଅଜଣା ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ।

ଛାତ୍ରର ସମଗ୍ର ଚୈତ୍ୟସତ୍ତାରେ ସଂଚରଣ ନ କରିଲେ ଛାତ୍ରମାନଙ୍କୁ ଏତାଦୃଶ psycho-educational guidance ଦେବା ଅସମ୍ଭବ ହୋଇପଡ଼ିବ ଏବଂ ଏପରି ସ୍ତରରେ ଜଣେ ଶିକ୍ଷକ ପହଞ୍ଚିବା ପାଇଁ ହେଲେ ସେ ଛାତ୍ରମାନଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟାରେ ନିଶ୍ଚିତ ସହଭାଗୀ ଓ ସହଗାମୀ ହେବ ହିଁ ହେବ। ସେଇଥିପାଇଁ ସମ୍ଭବତଃ ଚିତ୍ତଭାଇ ଅଧିକାଂଶ ଦିନ ଆମ ସହିତ ଖାଇ ବସନ୍ତି ଓ ଘରେ ଯେମିତି ଆମେ ଭାଇଭଉଣୀ ପରସ୍ପରଠାରୁ ଆନନ୍ଦରେ ଖାଇବାପତ୍ର ଛଡ଼ାଛଡ଼ି କରି ଖାଉ ଠିକ୍ ସେମିତି ସେ ଆମଠାରୁ ତରକାରୀ, ଭୋଜିଦିନ ପିଠା କ୍ଷୀରୀ ଛଡ଼େଇ ଖାଇ ଯାଆନ୍ତି ଓ ଆମେ ମଧ୍ୟ ତାଙ୍କଠାରୁ ଛଡ଼ାଇ ସବୁ ଖାଇଯାଉ। ସେ ଆମ ସଂଗେ ଖେଳନ୍ତି, ଗୀତ ଗାଆନ୍ତି, ଆମ ଗାଁ ଓ ଘର କଥା ପଚାର ଦୁଃଖ ସୁଖ ହୁଅନ୍ତି। ଦେଶ ବିଦେଶରେ ଲାଭ କରିଥିବା ତାଙ୍କ ଅନୁଭୂତି କହି ଆମ ମନରେ ବହୁତ କିଛି ପଢ଼ି ଜାଣିବାର ନୂଆ ନୂଆ ସ୍ୱପ୍ନମାନ ଭରାଇ ଦିଅନ୍ତି।

ବର୍ଷାଦିନେ ବର୍ଷା ହେଲେ ଆମ ଜୀବନ ବିଦ୍ୟାଳୟରେ ଗୋଟାଏ ମଉଜିଆ

ପର୍ବ ପରି ଲାଗେ । ନିଘଞ୍ଚ ଜଂଗଲ ଘେରା ଆମ ବିଦ୍ୟାଳୟରେ ବର୍ଷା ଯେମିତି କାହିଁ କେଉଁ ଅନନ୍ୟ ଉଦ୍ଦୀପନା ଭରି ଦେଇଯାଏ । ଯା ଫଳରେ ଖଣ୍ଡିଆ ମାଟିକୋ ଗୋଠ ମାତିବା କଥା ନ୍ୟାୟରେ ସେଠି ଅଧିକାଂଶ ପୁଅ ଝିଅ ଛାତ୍ରାବାସର ଛାତତଳୁ ବର୍ଷାକୁ ଓହ୍ଲାଇ ଆସନ୍ତି ସବା ଆଗ ଚିଉଭାଇ । ସେ ଅକାରଣରେ ଜାଣି ଜାଣି ଓଦା ହୋଇ ଯିବେ ଓ ଆଉ ତିନି ଚାରିଜଣଙ୍କୁ ସେମାନଙ୍କର ପଢ଼ା ଡେସ୍କପାଖରୁ ଟାଣି ଆଣିବେ । ବାସ୍, ଚାଲିଲା ରବୀନ୍ଦ୍ର ସଂଗୀତ- ବର୍ଷାରାସର ପର୍ବ ।

ଆମମାନଙ୍କ ସହ ଚିଉଭାଇ ନାଚି ଖେଳି ଗୀତ ଗାଇ ବର୍ଷାକୁ ବେଶ୍ ଉପଭୋଗ କରନ୍ତି । ଘନ ସବୁଜ ବନବିଘେରିତ ଆମ ସ୍କୁଲ ଚାରିପଟେ ବହିଯାଇଛି ବଡ଼ ଝରଣାଟିଏ । ସିଏ ବି ଏଇ ବର୍ଷା ବିଭୋର ହସଖୁସୀରେ ସାମିଲ୍ ହୋଇ ଉଦ୍ଦାମ ଗତିରେ ବନ୍ୟାପ୍ଳାବିତ ହୋଇ ଜଂଗଲ ମୁଣ୍ଡିଆ ପାହାଡ଼ ଓ ତତ୍ ସଂଲଗ୍ନ ଅରଣ୍ୟଭିତରୁ କେତେ ଶୁଖିଲା କାଠ ଓ ପତ୍ର ବୋହି ଆଣେ । ଚିଉଭାଇ ଆମକୁ ନେଇ ସେଇ ବନ୍ୟାରେ ଭାସି ଆସୁଥିବା କାଠ ସଂଗ୍ରହ ପାଇଁ ବାହାରି ପଡ଼ନ୍ତି । ଆମେ ସମସ୍ତେ ସମ୍ମିଳିତ ଭାବେ ଗାଡ଼ି ଗାଡ଼ି କାଠ ଝରଣାକୂଳରେ ଗଦେଇ ଦେଉ ଓ ପରଦିନ ତାକୁ ସୁବିଧା ଦେଖି ନେଇ ଆସୁ । ଚିଉଭାଇ ଏପରି ଭିଆଣ କରନ୍ତି ଜୀବନରେ ପ୍ରକୃତି ସହ ମିତ୍ର ହୋଇ ଆନନ୍ଦରେ ବଂଚିବା ପାଇଁ ଓ ସାମାଜିକ ଜୀବନରେ ସବୁଠାରୁ ବଡ଼ ଆବଶ୍ୟକତା ଭାଇ ଭାଇ ହୋଇ ଚଳିବା ପାଇଁ ।

ସମାଜ ଭିତରେ ନିଜର ସ୍ୱକୀୟ ଚିନ୍ତାଧାରାକୁ ସର୍ବ ସମକ୍ଷରେ କିପରି ଜଣେ ବ୍ୟକ୍ତି ଠିକ୍ ଢ଼ଙ୍ଗରେ ନିର୍ଭୀକ ଭାବେ କରିପାରିବ ତହିଁର ପ୍ରସ୍ତୁତି ଜୀବନ ବିଦ୍ୟାଳୟର ତର୍କ ସଭାରେ ଅଭ୍ୟାସ କରାଇବାର ଅଭିନବ ପ୍ରଚେଷ୍ଟା ଚିଉଭାଇ କରାଇଥାନ୍ତି । ତର୍କ ସଭାରେ ବିଦ୍ୟାଳୟର ସମସ୍ତ କର୍ମଚାରୀଙ୍କ ସମେତ ସବୁ ଛାତ୍ରଛାତ୍ରୀ ଉପସ୍ଥିତ ରହି ଆଲୋଚନାରେ ଭାଗ ନେବାକୁ ବାଧ୍ୟ । ଜୀବନ ବିଦ୍ୟାଳୟର ତର୍କ ସଭା ଓ ତର୍କାଲୋଚନା ସାଧାରଣ ସ୍କୁଲର ତର୍କ ସଭାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଗୋଟିଏ ବିଷୟ । ସାଧାରଣ ସ୍କୁଲର ତର୍କ ସଭାରେ ଗୋଟିଏ ମାତ୍ର ବିଷୟ ଉପରେ for and against ବକ୍ତବ୍ୟ ପ୍ରଦାନର ପ୍ରଚଳିତ ଧାରା ରହିଥାଏ । କିନ୍ତୁ ଜୀବନ ବିଦ୍ୟାଳୟରେ ୧୦-୧୨ଟି ବିଷୟ କାଗଜ ଗୁଡ଼ାକରି ଗୋଟିଏ ପାତ୍ରରେ ରଖାଯାଇଥିବ ଏବଂ ପ୍ରତ୍ୟେକଙ୍କୁ ସ୍ୱାଧୀନତା ଦିଆଯାଇଥିବ ଯେ ସେ ସେଇ କାଗଜ ଗୁଡ଼ାରୁ ଗୋଟିଏ ଉଠାଇ ନେଇ ସଭା ବାହାରକୁ ୫ ମିନିଟ୍ ପାଇଁ ଯାଇ ସେ କାଗଜ ଗୁଡ଼ାରେ ଲେଖାଥିବା ବିଷୟଟି ଉପରେ ଚିନ୍ତା କରି ଘଣ୍ଟି ବାଜିବା ମାତ୍ରେ ସଭାକୁ ଆସି ତାର ବକ୍ତବ୍ୟ ପ୍ରଦାନ

କରିବ ୫/୭ ମିନିଟ୍ ଭିତରେ । ତା' ପରେ ୫/୭ ମିନିଟ୍‌ରେ ଅନ୍ୟମାନେ ତା' ଉପରେ for ବା against ରେ ଜଣେ ଜଣେ ଆଲୋଚନା କରିବେ । ତା'ପରେ ପରବର୍ତ୍ତୀ ଘଣ୍ଟି ବାଜିବ ଓ ଆଉ ଜଣେ ସେମିତି ଗୁଳା ଉଠାଇ ନେବେ । ଏଇମିତି ପ୍ରାୟ ୨ ଘଣ୍ଟାକାଳ ହୋଇ ସାରିଲା ପରେ ସେଇ ୧୨ଟି ବିଷୟରୁ ଯେତୋଟି ଉପରେ ତର୍କଣା ହୋଇଥିବ ସେ ସବୁ ତର୍କ ଚିତ୍ତଭାଇ ସଭାତମାମ ତୁନିଟି ହୋଇ ବସି ଶୁଣୁଥିବେ ଓ ସବା ଶେଷରେ ସେ ସମସ୍ତ ବିଷୟ ଗୁଡ଼ିକର ସମ୍ୟକ ପର୍ଯ୍ୟାଲୋଚନା କଲାବେଳେ ଏପରି ବକ୍ତବ୍ୟ ପ୍ରଦାନ କରିଯିବେ ଯେଉଁଥିରେ ଆମ ନିଜ ନିଜର ବକ୍ତବ୍ୟରେ କେଉଁଠି କି କି ଭୁଲ୍ ବା ଅଭାବ ରହିଗଲା ତାହା ଆମେ ବେଶ୍ ଧରିନେଇପାରିବୁ ଓ ପରବର୍ତ୍ତୀ ତର୍କ ସଭାପାଇଁ ସଜାଗ ହୋଇ ରହିଥିବୁ । ଚିତ୍ତଭାଇ ତର୍କସଭାର ବିଷୟବସ୍ତୁଗୁଡ଼ିକ ବେଶ୍ ମନୋବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନେଇ ଏମିତି ନିର୍ବାଚନ କରିଥିବେ ଯେଉଁଥିରେ ଜଣେ ଛାତ୍ର ତା'ର ଅଧ୍ୟୟନ ପରିସରକୁ ଆସ୍ତେ ଆସ୍ତେ ନିର୍ଦ୍ଦିଷ୍ଟ ପାଠ୍ୟ ନିର୍ଘଣ୍ଟ (courses of studies) ଠାରୁ ବ୍ୟାପ୍ତ କରିବାର ବାଟ ଖୋଜି ଚାଲିବ ଓ ସେଥିପାଇଁ ପ୍ରତ୍ୟହ ଖବର କାଗଜ ତଥା ଲାଇବ୍ରେରୀକୁ ହିଁ ବିଶେଷ ଉପଯୋଗୀ କରିବାକୁ ବାଧହେବ ।

ତର୍କ ପାଇଁ ସେତେବେଳେ ଚିତ୍ତଭାଇ ନିର୍ବାଚିତ କରିଥିବା କେତୋଟି ବିଷୟ ମୋର ମନେ ପଡୁଛି ଯଥା- ପଞ୍ଚଶୀଳ ନୀତି, ଚରଣ ଚୁଟିଆ, ନଇକେ ବାଙ୍କ ଦେଶକେ ଫାଙ୍କ, ଶୀତରାଣୀର ବସନ ହଳଦିଆ, ଏକଛତ୍ରବାଦୀ ନେହେରୁ, ମନ ମୋହର ନିଜ ଗୁରୁ, ସୀମା ଆନ୍ଦୋଳନ ଓ ଜାତୀୟତା, ପେଟର ଭୋକ ଓ ଆକାଶର ଜହ୍ନ, ଜନ୍ତୁ, ଜଂଗଲ ଓ ମଣିଷ, କୋଇଲି ପାରଡ଼ା, ଶରତ ସକାଳ, ଭଗବାନ ଓ ବଡ଼ଲୋକ, ଭୋକିଲା ପେଟରେ ବ୍ରହ୍ମ ନଥାଏ, ଅଜ୍ଞାନ ମଣିଷର ବିଜ୍ଞାନ ଚର୍ଚ୍ଚା, ପୁଅଠାରୁ ଝିଅ ସ୍ୱତନ୍ତ୍ର, ମୋ ଘର ଚାରିକାନ୍ଥ, ସତ୍ୟବାଦୀ ବିଦ୍ୟାଳୟ, ଅଳସୁଆ ଭାଗବତ, ଫୁଲଗଛ ମୂଳେ ମୋ ଜୀବନ, ଚେଙ୍ଗ ଶୋଇବା, ପାଶ୍ଚାତ୍ୟ ଗାନ୍ଧୀ ଆଲବର୍ଟ ସ୍ୱାଇତ୍‌ଜର, ଭୂଦାନ, ଗ୍ରାମଦାନ-ଆଜିର ପୃଥିବୀକୁ ଏକ ଆହ୍ୱାନ, ଇତ୍ୟାଦି ।

ଚିତ୍ତଭାଇଙ୍କର ଏପରି ବିଷୟ ନିର୍ବାଚନ ଆମ ମନକୁ ଅଧ୍ୟୟନ ଆକାଶରେ କେତେ ଦିଗ ଦିଗନ୍ତକୁ ଉଡ଼ିଯାଇ ଜୀବନ, ସମାଜ ଓ ପୃଥିବୀ ବିଷୟରେ ଜ୍ଞାନ ଆହରଣ କରିବା ନିଶାରେ ବୁଡ଼ାଇ ରଖେ- ସେ କଥା ଆଜି ବି ଭାବିଲେ ଭାରି ଖୁସୀ ଲାଗେ । ଆଜି ସ୍ପଷ୍ଟ ଅନୁଭୂତ ହୁଏ ଯେ ପ୍ରକୃତରେ ଜଣେ ସମର୍ପିତ ସଦ୍ ପ୍ରାଣର ଗୁରୁ ହିସାବରେ ଚିତ୍ତଭାଇ କେତେ ଅନନ୍ୟ ଓ କେତେ ବାସ୍ତବବାଦୀ ପ୍ରୟୋଗାତ୍ମକ

ଶିକ୍ଷାର ଦିଗଦ୍ରଷ୍ଟା ଦାର୍ଶନିକ, ଯିଏ ଛାତ୍ରମାନଙ୍କର ଚେତନ ଅବଚେତନ, ସଚେତନ ସ୍ତରରେ ବିଚରଣ କରି ତା ପ୍ରତିଭାର ସମ୍ୟକ ବିକାଶରେ ସାହାଯ୍ୟ କରନ୍ତି । ଛାତ୍ରର ପୂର୍ଣ୍ଣାଙ୍ଗ ଶିକ୍ଷା ଯାହାକୁ ଆଜି କାଲି integral education ବୋଲି କୁହାଯାଉଛି ସେ ଆମ ଜୀବନ ବିଦ୍ୟାଳୟରେ ତା'ର ସଠିକ୍ ପ୍ରୟୋଗ କରି ନାନା ଅସୁବିଧା, ଅଭାବ ଓ ଅନଟନ ମଧ୍ୟରେ ମଧ୍ୟ ସଫଳକାମୀ ହୋଇ ପାରିଥିଲେ । ସେପରି ଶିକ୍ଷା ପଦ୍ଧତିର ଆବଶ୍ୟକତା ଆଜି ମଧ୍ୟ ରହିଛି ବୋଲି ମୋର ଦୃଢ଼ ବିଶ୍ୱାସ ହୁଏ ।

ଚିତ୍ତଭାଇଙ୍କ ପରିକଳ୍ପିତ ଶିକ୍ଷା ପଦ୍ଧତି କେବଳ ପିଲାଟିକୁ ତା'ର ଶିକ୍ଷା ଶେଷରେ ସମାଜରେ କେବଳ ତଥାକଥିତ ବାବୁଟିଏ କରି ଗଢ଼ି ତୋଳିବାର ପ୍ରୟାସରେ ଆଦୌ ନ ଥିଲା । ଛାତ୍ରଟି ସମାଜରେ ବା ଦେଶରେ କିପରି ଆମ ମାଟିର ଦୀକ୍ଷା "ବସୁଧୈବ କୁଟୁମ୍ବକମ୍"କୁ ଜୀବନଚର୍ଯ୍ୟାରେ ପରିଣତ କରିପାରିବ ତଥା ସମସ୍ତଙ୍କ ସହ ସହଯୋଗୀ ମନୋବୃତ୍ତି ନେଇ ଓ ସବୁରିଙ୍କ ସୁଖ ଦୁଃଖରେ ଭାଗୀ ହୋଇ ଏକ ସଂବେଦନଶୀଳ ସାମାଜିକ ବ୍ୟକ୍ତି ହୋଇ ଠିଆ ହୋଇପାରିବ – ତହିଁର ମୂଳଦୁଆ ଜୀବନ ବିଦ୍ୟାଳୟର ନାନା ବହିର୍ମୁଖୀ କାର୍ଯ୍ୟକ୍ରମ ମାଧ୍ୟମରେ ଚିତ୍ତଭାଇ ଆମମାନଙ୍କ ଚେତନା ରାଜ୍ୟରେ ଆଙ୍କି ଦେଇ ଯାଉଥିଲେ । ସେଥିପାଇଁ ଜୁଆଙ୍ଗ ଆଦିମ ଅଧିବାସୀ, ଯେଉଁମାନେ ଆମ ଦେଶରେ ଏକ ଅଂଶ, ସେମାନଙ୍କର ଅବିନ୍ୟସ୍ତ ଜୀବନରେ ଏକ ମୋଡ଼ ଆଣି, ତାଙ୍କୁ ଆମ ସଭ୍ୟ ସମାଜରେ ସକଳ ସୁଯୋଗ ଉପଲବ୍ଧ କରାଇବାପାଇଁ ଆମ ଭିତରୁ ଅନେକଙ୍କୁ ନେଇ ସେ ଜୁଆଙ୍ଗ ପିଢ଼ ଯାଉଥିଲେ ଓ ଜୁଆଙ୍ଗମାନଙ୍କ ଉନ୍ନତି ପାଇଁ ପରିକଳ୍ପନା ଓ ନାନାବିଧ କାର୍ଯ୍ୟ କରିଥିଲେ । ଦଳେଇଘାଇ ବନ୍ୟାରେ ସେତେବେଳେ ଜୀବନ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକ ମାସାଧିକ କାଳ ଜନସେବା କରିଥିଲେ । ଦିନସାରା ଜୁଆଙ୍ଗ ସେବା ହେଉ ବା ବନ୍ୟା ଥଇଥାନ କାର୍ଯ୍ୟ ହେଉ -ସେସବୁର ପରେ ରାତିରେ ଚିତ୍ତଭାଇ ସେଇସବୁ କାର୍ଯ୍ୟାବଳୀର ତାତ୍ପର୍ଯ୍ୟ ତଥା ଜୀବନ ଉପରେ ସେଗୁଡ଼ିକର କିପରି ପ୍ରଭାବ ରହିଛି ତା'ର ବୌଦ୍ଧିକ ଆଲୋଚନା କରୁଥିଲେ ଏବଂ ତା' ସହିତ ମଧ୍ୟ ପାଠ ପଢ଼ା କରାଉଥିଲେ । ଏହା ଦ୍ୱାରା ଆମେ ସ୍ପଷ୍ଟ ବୁଝି ପାରୁଥିଲୁ ଯେ ଛାତ୍ର ଜୀବନର ଶିକ୍ଷା କେବଳ ପୋଥିଗତ ବିଦ୍ୟାରେ ସୀମିତ ରହିପାରେନା । ସେଇଥିପାଇଁ ସମ୍ଭବତଃ ଚିତ୍ତଭାଇ ଜଂଗଲ ଚିଠି ୩୧ ପୃଷ୍ଠାରେ ଲେଖିଛନ୍ତି.... "ତଥାପି ଆମେ କହିବା ଆମର ପାଠଶାଳା ଚାରିଟା କାନ୍ଥ ଓ ଗୋଟାଏ ମାଷ୍ଟରରେ ବାଡ଼ଦିଆ ହୋଇ ରହିଥିବା ପାଠଶାଳା ନୁହେଁ, ଆମର ଏଇ ପାଠଶାଳା ବିଶ୍ୱବ୍ୟାପୀ ପାଠଶାଳା ଜାଣିବାର, ଚିହ୍ନିବାର ଓ ସର୍ବୋପରି ଅନୁଭବ କରିବାର କ୍ଷୁଧାନେଇ ଆମେ

ଯେଉଁମାନେ ଆମର (ଜୀବନ) ବିଦ୍ୟାଳୟଟି ଗଢ଼ିଛୁ, ସାରା ପୃଥିବୀର ସବୁ କ୍ଷେତ୍ରରେ ଶିକ୍ଷାର୍ଥୀର ଜିଜ୍ଞାସାନେଇ ପ୍ରବେଶ କରିବାର ଧୈର୍ଯ୍ୟ ଆମେ ଅର୍ଜନ କରିବା । ଏ ବ୍ରହ୍ମାଣ୍ଡରେ ସମସ୍ତେ ଆମର ଗୁରୁ, ମଣିଷର ସୁଖ, ଦୁଃଖ, ସ୍ନେହ ପ୍ରୀତି ଓ ତାର ବୈଚିତ୍ର୍ୟବହୁଳ ଜୀବନ ଆମର ଗୁରୁ ।''

ଏଇ କେଇଧାଡ଼ି ବେଶ୍ ସୂଚାଇ ଦେଉଛି ଜଣେ ବିଶ୍ୱଗୁରୁର ବେଦ ବେଦାନ୍ତର ଜୀବନଚର୍ଯ୍ୟା ତଥା ସମାଜ ପାଇଁ ସଚ୍ଚା ମଣିଷ ଗଢ଼ିବାର ଅନନ୍ୟ ସ୍ୱପ୍ନ । ସେଇ ସ୍ୱପ୍ନକୁ ସାର୍ଥକ କରିବା ପାଇଁ ସେ ସେତେବେଳେ ଆମକୁ ନେଇ ଶିକ୍ଷାର ଏକ ବାସ୍ତବାଭିମୁଖୀ ପ୍ରୟୋଗ କରି ସକଳ ପ୍ରକାରର ନାହିଁ ନାହିଁ ଭିତରେ ଓ ଅର୍ଥାଭାବ ଭିତରେ ବେଶ୍ ସଫଳତା ଲାଭ କରିଥିଲେ ବୋଲି ଆଜି ଗର୍ବରେ କହିପାରୁଛନ୍ତି । ଏହି ପରିପ୍ରେକ୍ଷୀରେ ମନେ ପଡ଼ିଯାଉଛି ଅର୍ଥାଭାବ ମେଣ୍ଟାଇବା ପାଇଁ ନିଜର ବିଦେଶତିଆରି ଅତି ପ୍ରିୟ ହାତଘଣ୍ଟା ଓ କ୍ୟାମେରା ଇତ୍ୟାଦିକୁ ଆମ ଅଗୋଚରରେ ସେ କିପରି ବିକ୍ରି କରିଦେଇଥିଲେ । ସେହି ଦିନଗୁଡ଼ିକର କଥା ଭାବିଲାବେଳେ ଆମ ଆଖିରେ ଲୁହ ଆସିଯାଉଛି । ତାଙ୍କ ପ୍ରତି କୋଟି କୋଟି ଜନ୍ମର ପ୍ରଣାମ ଢ଼ାଳି ଦେଇ ମଧ ତାଙ୍କ ପାଇଁ କିଛି କରି ନପାରିବାର ଦୁଃଖରେ ତୁନିଟି ହୋଇ ରହିବାକୁ ପଡୁଛି ।

ଆମ ପିଲାଦିନେ ସିନେମାର ଆକର୍ଷଣ ସମ୍ଭବତଃ ଚଗଲାମନପାଇଁ ବେଶୀ ଥିଲା । ସେତେବେଳେ ପିଲାଏ ସିନେମା ଦେଖିଲେ ନଷ୍ଟ ହୋଇଯିବେ ବୋଲି ତଥାକଥିତ ଗୁରୁଜନମାନେ ଆମକୁ ତାଗିଦ କରୁଥିଲେ । ମାତ୍ର ଚିଉଭାଇଙ୍କର ସେ ନେଇ ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । ସେ ଆମ ସମସ୍ତଙ୍କୁ ସାଥିରେ ନେଇ ଏମିତି ସିନେମା ସବୁ ଦେଖାଇବାକୁ ନେଉଥିଲେ ଯେଉଁ ଛବିଗୁଡ଼ିକ ଦେଖି ସାରିଲା ପରେ ଆମ ମାନଙ୍କର ଭାବାନ୍ତର ସୃଷ୍ଟି ହେଉଥିଲା ଓ ମଣିଷ ଜୀବନର ବିଭିନ୍ନ ଦିଗନ୍ତର ଆଲୋକିତ ଦିଗ ଦୃଷ୍ଟିଗୋଚର ହେଉଥିଲା । ଦୋ ଆଁଖେ ବାରା ହାତ, ଦୋଭିଗା ଜମିନ, କାବୁଲିବାଲା ଇତ୍ୟାଦି ସିନେମା ତାଙ୍କରି ଯୋଗୁଁ ଆମେ ଅନୁଗୁଳ ଯାଇ ଶଙ୍କର ସିନେମାହଲ୍‌ରେ ଦେଖିଥିଲୁ । ମନେ ପଡୁଛି,''ଦୋ ଆଁଖେ ବାରାହାତ'' ଛବି ଉପରେ ଥରେ ସେ ଗୋଟିଏ ସଭାରେ ସ୍କୁଲରେ ଆମକୁ ବେଶ୍ ଭଲ ଭାଷଣଟିଏ ଦେଇଥିଲେ । ବଂଦୀ ମାନଙ୍କର ମନସ୍ତାତ୍ତ୍ୱିକ ଚିକିତ୍ସା ବଳରେ କିପରି ଅଭୂତପୂର୍ବ ପରିବର୍ତ୍ତନ ହୁଏ ତାହା ବୁଝାଇ ମୁକ୍ତ ବନ୍ଦୀ ଶିବିର କଥା କହିଥିଲେ । ତାଙ୍କ ବିଷୟରେ ଆଜି ଏତିକି...

*ଅଧ୍ୟାପକ ଚୈତନ୍ୟ ପ୍ରସାଦ ସେଠୀ*

*ବିଶ୍ୱନାଥ, କଟକ*

# ସେ ବଡ଼ ବିଚକ୍ଷଣ ଲେଖକ

ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ ମୋତେ ଜାଣିବା ଆଗରୁ ମୁଁ ତାଙ୍କୁ ଊଣାଅଧିକେ ଜାଣି ସାରିଥିଲି, ତାଙ୍କରି ଲେଖା ମାଧ୍ୟମରେ । ବାସ୍ତବରେ ଚିତ୍ତବାବୁଙ୍କ ଲେଖାଗୁଡ଼ିକର ସରଳ ତରଳ ଭାଷା ସହଜରେ ପାଠକମାନଙ୍କୁ ଆକର୍ଷିତ କରିଯାଏ । ତାଙ୍କର ଲେଖା ପଢ଼ି ତାଙ୍କୁ ଜାଣିବା ପାଇଁ ମୋ ଭିତରେ ଏକ ସ୍ୱତଃ ଆଗ୍ରହ ଜାତ ହୋଇଥିଲା ।

ଶ୍ରୀ ଅରବିନ୍ଦ ବୋଧହୁଏ ଗୀତାଭାଷ୍ୟ ଲେଖିଲା ବେଳେ ଶ୍ରୀକୃଷ୍ଣ-ଅର୍ଜୁନ ପ୍ରସଙ୍ଗରେ ବୁଝାଇବାକୁ ଯାଇ ଲେଖିଛନ୍ତି–''ବ୍ୟକ୍ତିକୁ ନ ଜାଣିଲେ ତାଙ୍କର ବକ୍ତବ୍ୟକୁ ବୁଝିହୁଏନାହିଁ ।'' ସେଥିପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବିଶ୍ୱରୂପ ଦେଖାଇଥିଲେ । ମୁଁ ଭାବୁଛି କବି ଲେଖକମାନଙ୍କ କ୍ଷେତ୍ରରେ ମଧ୍ୟ ଏହି ଉକ୍ତି ପ୍ରଯୁଜ୍ୟ । କାରଣ ଅନ୍ତତଃ ମୋ କ୍ଷେତ୍ରରେ ଚିତ୍ତବାବୁଙ୍କୁ ନ ଜାଣିଲାଯାଏ ତାଙ୍କ ଲେଖାଗୁଡ଼ିକର ଭାବସମୂହକୁ ଯଥାର୍ଥ ଭାବରେ ବୁଝିହେଉ ନଥିଲା । ତେଣୁ ତାଙ୍କୁ ଜାଣିବା ପାଇଁ ମୋ' ମନରେ ଇଚ୍ଛା ଜାଗ୍ରତ ହେବା ସ୍ୱାଭାବିକ ଥିଲା । କିନ୍ତୁ ଆଦିବାସୀ ଅଧ୍ୟୁଷିତ ସୁଦୂର କୋରାପୁଟ ଜିଲ୍ଲାର ଆରଣ୍ୟମଧ୍ୟରେ ନିବାସ କରି ତାଙ୍କୁ ବା ଜାଣିଥାନ୍ତି କିପରି ? ତେଣୁ ବହୁଦିନ ପର୍ଯ୍ୟନ୍ତ ତାଙ୍କୁ ନ ଜାଣି ତାଙ୍କ ଲେଖା ପଢ଼ି ମାଧୁର୍ଯ୍ୟ ଅନୁଭବ କରିବାକୁ ବାଧ ହେଉଥିଲି । ଏପରିଭାବରେ ଅନେକ ବର୍ଷ ଚାଲିଯାଇଥିଲା । ତେବେ ଏଇମାତ୍ର ପ୍ରାୟ ତିରିଶ ବର୍ଷ ପୂର୍ବେ ମୁଁ ଯେତେବେଳେ ଭୁବନେଶ୍ୱରକୁ ଘନ ଘନ ଆସିଲି ଓ ପରେ ଭୁବନେଶ୍ୱରର ବାସିନ୍ଦା ହୋଇଗଲି ସେତେବେଳେ ଚିତ୍ତବାବୁ ମୋ' ନିକଟରେ ଆଉ ଅପରିଚିତ ହୋଇ ରହିପାରିଲେ ନାହିଁ । ସଭା ସମିତିରେ, ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ବରାବର ତ ଦେଖାହେଲା, ଭାବର ଆଦାନପ୍ରଦାନ ହେଲା, ମନ ପୂରିଗଲା । ଅବଶ୍ୟ ଜୟପୁରରେ ମୁଁ 'ସାହିତ୍ୟ ସମାଚାର' ପତ୍ରିକା ସଂପାଦନ କରୁଥିଲାବେଳେ ତାଙ୍କ ସଂପର୍କରେ କିଛି କଥା ସଂଗ୍ରହ କରିଥିଲି ଓ ଉତ୍ସାହିତ ହୋଇଥିଲି । କିନ୍ତୁ ଭୁବନେଶ୍ୱର ରହଣି ତାଙ୍କୁ ମୋର ଅନେକ ନିକଟତମ କରିଦେଲା ।

ବିଶେଷ କରି ମୁଁ ଯେତେବେଳେ 'ଧରିତ୍ରୀ'ର ପ୍ରକାଶନ ଓ ସଂପାଦନା କାର୍ଯ୍ୟରେ ବ୍ୟସ୍ତ ରହୁଥିଲି, ସେତେବେଳେ ଅଚାନକ ଗୋଟିଏ ଘଟଣା ଘଟିଲା - ମୋ' ବାପା ଏକ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହୋଇ ଜୟପୁରରୁ ମୋ' ପାଖକୁ ଭୁବନେଶ୍ୱର ଚାଲିଆସିଲେ, ସେତେବେଳେ ତାଙ୍କ ଚିକିତ୍ସା ବ୍ୟବସ୍ଥା କରିବା ଓ ତାଙ୍କର ଯତ୍ନ ନେବାରେ ମୋର ସବୁ ସମୟ ବ୍ୟୟିତ ହେବାରେ ଲାଗିଲା । ଏପରିକି ପୂର୍ବ ଅଭ୍ୟାସ ଅନୁସାରେ ସକାଳେ ସଂପାଦକୀୟଟିଏ ଲେଖି ପ୍ରେସ୍‌କୁ ପଠାଇବା ସମ୍ଭବ ହେଲାନାହିଁ । ତେଣୁ ବାଧହୋଇ ମୁଁ ଚିରବାବୁଙ୍କ ସାହାଯ୍ୟ ଲୋଡ଼ିଲି । ସେତେବେଳେ ୟୁନିଟ୍-୨ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ପରିସର ମଧ୍ୟରେ ସେ ରହୁଥିଲେ । ତେଣୁ ତାଙ୍କ ସହ ଯୋଗାଯୋଗ ସ୍ଥାପନ କରିବା ମୋ'ପକ୍ଷରେ ସହଜ ହୋଇଗଲା । ତାଙ୍କୁ ଦେଖାକରି ମୁଁ ଯେତେବେଳେ ବାପାଙ୍କର ଦୁରାରୋଗ୍ୟ ବ୍ୟାଧି ଓ ମୋର ଅସୁବିଧା କଥା କହିଲି ଓ ପ୍ରତିଦିନ ସଂପାଦକୀୟ ଲେଖିଦେବା ପାଇଁ ଅନୁରୋଧ କଲି । ସେ ନାହିଁ କରିପାରିଲେ ନାହିଁ । ମୁଁ ଲକ୍ଷ୍ୟ କରିଛି ଯେତେବେଳେ ବାପାଙ୍କ ଜୀବନର ଶେଷ ଅବସ୍ଥାରେ ତାଙ୍କର ସେବା କରିବା ମୋର ଏକାନ୍ତ କର୍ତ୍ତବ୍ୟ ହୋଇଥିବାରୁ ମୁଁ ବାଧ୍ୟ ହୋଇ ତାଙ୍କୁ ହଇରାଣ କରୁଛି ବୋଲି କହିଲି, ସେତେବେଳେ ଚିରବାବୁ ବଡ଼ ଗମ୍ଭୀର ହୋଇ ଟିକିଏ ଚିନ୍ତା କଲାପରେ ସଙ୍ଗେ ସଙ୍ଗେ ସମ୍ମତି ଜଣାଇଦେଲେ । ଏବଂ ମୁଁ ମୋ' ଜୀବନର ଏକ ଆସନ୍ନ ସଂକଟଜନକ ସ୍ଥିତିରୁ ରକ୍ଷାପାଇଗଲି । ଚିରବାବୁଙ୍କ ଏହି ସହୃଦୟ ସାହାଯ୍ୟ ସହଯୋଗ କ'ଣ ତାଙ୍କର ମଣିଷପଣିଆର ସ୍ୱତନ୍ତ୍ର ଦେଖାଇ ଦେଉନାହିଁ ? ବାସ୍ତବିକ୍ ସେଥିପାଇଁ ତାଙ୍କ ନିକଟରେ ମୁଁ ଚିରକୃତଜ୍ଞ ହୋଇରହିବି ।

ଏଭଳି କେତେକ କାରଣରୁ ଅନ୍ତତଃ ଲେଖାଲେଖିରେ, କଥାବାର୍ତ୍ତା କରିବାରେ, ସାହାଯ୍ୟ ସହଯୋଗରେ ତାଙ୍କର ବିଚକ୍ଷଣପଣିଆ ଫୁଟିଉଠିଥାଏ ବୋଲି ମୁଁ କହିପାରେ । ଏ ସଂପର୍କରେ ଏଠାରେ ଆଉ ଏକ ଉଦାହରଣ ଉଲ୍ଲେଖ କରାଯାଇପାରେ ।

ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମରେ ନବଜ୍ୟୋତି କାର୍ଯ୍ୟାଳୟ ପ୍ରତିଷ୍ଠା ହେବାପରେ ଓଡ଼ିଆ ଭାଷାରେ ଅନୁବାଦ କରି ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ବହିପତ୍ର ପ୍ରକାଶ କରିବା, ପତ୍ରିକା ପ୍ରକାଶନ ଓ ପ୍ରସାରଣ କରାଇବା କାର୍ଯ୍ୟରେ ଆମେ କେତେଜଣ ପ୍ରପତ୍ତିଙ୍କୁ ସାହାଯ୍ୟ କରୁଥିଲୁ । ସେହି ସମୟରେ ଶ୍ରୀଅରବିନ୍ଦଙ୍କ ବହିପତ୍ର ଓଡ଼ିଆରେ ଅନୁବାଦ କରିବା ବଡ଼ କଠିନ ବ୍ୟାପାର ମନେ ହେଉଥିଲା । ତେଣୁ ସେଥିରେ ହାତ ଦେବାକୁ ଆମର ସହଯୋଗୀମାନେ ପଛଘୁଞ୍ଚା ଦେଉଥିଲେ ।

ସେଥିପାଇଁ ପ୍ରପତ୍ତି ଚିନ୍ତିତ ଥିଲେ । କିନ୍ତୁ ଅକସ୍ମାତ୍ ସେହି କାମପାଇଁ ସେ ଚିତ୍ତବାବୁଙ୍କ ସାହାଯ୍ୟ ଲୋଡ଼ିଲେ । ବିସ୍ମୟର ବିଷୟ ଏହି ଯେ ସେହିଦିନଠାରୁ ଚିତ୍ତବାବୁ ଶ୍ରୀଅରବିନ୍ଦଙ୍କର କଠିନ ଇଂରାଜୀ ଭାଷାର ବହିଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଅନୁବାଦ କରିଚାଲିଲେ । ଫଳରେ ଓଡ଼ିଆ ଭାଷାରେ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର ବହିଗୁଡ଼ିକ ପ୍ରକାଶ କରିବା ସମ୍ଭବ ହୋଇପାରିଲା । ସେହି ସମୟରେ ମୋ' ମନରେ ପ୍ରଶ୍ନ ଉଠୁଥିଲା, କିପରି ଓ କେଉଁ ସାମର୍ଥ୍ୟ ବଳରେ ଏଭଳି ଏକ ଦୁରୂହ କାର୍ଯ୍ୟ ସେ ଚଟାପଟ ସଂପାଦନ କରିଚାଲିଛନ୍ତି ?

ଚିତ୍ତବାବୁ ତାଙ୍କର 'ମିତ୍ରସ୍ୟ ଚକ୍ଷୁସା' ବହିରେ ନିଜ ବିଷୟରେ ଲେଖିଲାବେଳେ ଗୋଟିଏ ସ୍ଥାନରେ ଲେଖିଛନ୍ତି – ''ମୋ' ବାଟ ଚାଲିବାର ନିୟତିଟି ମୋତେ ନିରନ୍ତର ଅଧିକରୁ ଅଧିକ ଗ୍ରହଣଶୀଳ କରି ଯେ ଆଣିପାରିଛି, ତାହା ପ୍ରକୃତରେ ବଡ଼ ଭାଗ୍ୟ !''

ମନେହୁଏ, ଚିତ୍ତବାବୁଙ୍କ ଅପୂର୍ବ ଗ୍ରହଣଶୀଳ ସ୍ୱଭାବ, ଶିକ୍ଷା, ସାହିତ୍ୟ ଓ ଆଧାତ୍ମିକ ବିଜ୍ଞାନ କ୍ଷେତ୍ରରେ ସମ୍ଭବତଃ ତାଙ୍କୁ ଏତେ ପାରିବାର କରି, ସମର୍ଥ କରି ଗଢ଼ିତୋଳିଛି ।

*ରାମନାଥ ପଣ୍ଡା*

*୧୯୧, ଖାରବେଳ ନଗର, ଭୁବନେଶ୍ୱର-୧*

# ମୁଁ ତାଙ୍କୁ ଯେତିକି ଜାଣିଛି

୧୯୭୦-୭୧ ମସିହାର କଥା । ସ୍କୁଲ ଜୀବନ ଛାଡ଼ି କଲେଜ ଜୀବନରେ ପ୍ରବେଶର ସମୟ । ଭଦ୍ରକ କଲେଜରେ ପ୍ରି-ୟୁନିଭରସିଟି କ୍ଲାସରେ ଯୋଗ ଦେଇଥାଏ । ଦୁନିଆକୁ ନୂଆ ଆଖିରେ ଦେଖିବାର ଓ ସମସ୍ତଙ୍କୁ ଜାଣିବାର ପ୍ରବଳ ଆଗ୍ରହ ସେତେବେଳେ ଉଛୁଳି ପଡୁଥାଏ ମୋ ତରୁଣ ମନରେ । କମ୍ୟୁନିଜମ୍‌ଠାରୁ ସର୍ବୋଦୟ, ସମ୍ପୂର୍ଣ୍ଣକ୍ରାନ୍ତି ଯାଏ ସବୁ ବିଷୟରେ ଖବର ରଖିବା ପାଇଁ ପ୍ରବଳ ଅଭୀପ୍ସା । ସେ ସମୟରେ ଭଦ୍ରକ କଲେଜ ଛାତ୍ର ଆନ୍ଦୋଳନର ଡଡଲା ଉହ୍ନେଇ ଥିଲା । ଅବଶ୍ୟ ଅଧିକତର ଆନ୍ଦୋଳନ ସ୍ଥାନୀୟ ସମସ୍ୟାକୁ ନେଇ ହେଉଥାଏ । ତଥାପି ପରମ୍ପରା ଅନୁସାରେ କଲେଜ ଛାତ୍ର ୟୁନିୟନ୍ ଶରତ ଉତ୍ସବ, ଶୀତ ଉତ୍ସବ, ଓ ବସନ୍ତୋତ୍ସବ ପ୍ରଭୃତି ଆଡ଼ମ୍ବର ସହକାରେ ପାଳନ କରୁଥାଏ । ଆଜିର

ସମୟଠାରୁ ସେ ସମୟର ଭିନ୍ନତା ଏଇୟା ଯେ ଆଜି ମନ୍ତ୍ରୀଙ୍କୁ ଛାଡ଼ି କଲେଜରେ କେହି ସଭାଟିଏ କି ଉତ୍ସବଟିଏ କରୁନାହାନ୍ତି । କିନ୍ତୁ ସେ ସମୟରେ କଲେଜରେ ଉତ୍ସବକୁ ମନ୍ତ୍ରୀ ଆସିବାର ନଜିର ମୋର ମନେ ପଡୁନାହିଁ । ରାଜ୍ୟର ସାହିତ୍ୟିକ, ଅର୍ଥନୀତି ବିଶାରଦ, ବିଶିଷ୍ଟ ଶିକ୍ଷାବିତ୍, ସର୍ବୋଦୟ କର୍ମୀ, ସାମ୍ବାଦିକ ଇତ୍ୟାଦିଙ୍କୁ ନେଇ ଉତ୍ସବମାନ ହେଉଥିଲା । ରବି ସିଂଙ୍କ ତେଜସ୍ୱିନୀ ଭାଷଣ ଅଥବା ରାଧାନାଥ ରଥଙ୍କର ପରିସଂଖ୍ୟାନଭିତ୍ତିକ ବକ୍ତବ୍ୟ– ସେ ସମସ୍ତ ଆମର ପ୍ରିୟ ଥିଲା । ଏହିଭଳି ଏକ ଉତ୍ସବରେ ଚିତ୍ତଭାଇଙ୍କ ସହ ପ୍ରଥମ ସାକ୍ଷାତ । ସାକ୍ଷାତ ତ ନୁହେଁ, କାରଣ ଏଥିରେ ଦ୍ୱିପାକ୍ଷିକ କିଛି ନଥିଲା । ଦୂରରୁ କେବଳ ଦର୍ଶନ ।

ଉକ୍ତ ଉତ୍ସବରେ ଓଡ଼ିଶାର ବହୁ ନାମୀଦାମୀ ବକ୍ତା ଓ ବ୍ୟକ୍ତିତ୍ୱ ଥା'ନ୍ତି । ଆଠ କି ଦଶ ସରିକି ପ୍ରଖ୍ୟାତଯଶା ଏବଂ ତାଙ୍କ ମେଳରେ ଚିତ୍ତରଂଜନ । ଭଦ୍ରକ କଲେଜର ଆମ୍ବ-ବଉଳ ଗଛ ଘେରା ସଭାମଞ୍ଚ ଏବଂ ତା ସାମ୍ନାରେ ଅର୍ଦ୍ଧ ବୃତ୍ତାକାର ସିମେଣ୍ଟ ତିଆରି ଗ୍ୟାଲେରୀ । ସେ ବକ୍ତା, ଆଉ ମୁଁ ପ୍ରାୟ ତିନି ହଜାର ଶ୍ରୋତାଙ୍କ ମଧ୍ୟରେ ଅନ୍ୟତମ ଉତ୍ସୁକ କିଶୋରଟିଏ । ସେତେବେଳେ ସେ ମୋ ପାଇଁ ଏତେଟା ପରିଚିତ ବ୍ୟକ୍ତିତ୍ୱ ନ ଥିଲେ । ତଥାପି "ଜୀବନ ବିଦ୍ୟାଳୟ" ସମ୍ପର୍କିତ କିଛିଟା କଥା କାହାଠାରୁ ଶୁଣିଥିଲି । ବିଦେଶରୁ ପାଠପଢ଼ି ଯେ ଜଣେ କିପରି ଅତି ସାଧାରଣ ସ୍କୁଲର ମାଷ୍ଟରଟିଏ ହେବାକୁ ଜୀବନର ଲକ୍ଷ୍ୟ ହିସାବରେ ନେଇପାରେ- ଏହିଭଳି କିଛି କଥା ଶୁଣିଥିଲି । ଏଣୁ ତାଙ୍କୁ ଦେଖିବାର ଓ ତାଙ୍କଠାରୁ ଶୁଣିବାର କୌତୁହଳ ଥାଏ । ଦେଖିଲି ଅତି ନିରଳସ ଚେହେରା । ଖଦଡ଼ ଧୋତି ଓ ପଞ୍ଜାବୀ ପରିହିତ । ମତେ କିଏ କହିଥିଲା ସେ ସବୁ କାମ ତାଙ୍କ ନିଜ ହାତରେ କରନ୍ତି । ନିଜର ଲୁଗା, କମିଜ୍ ସେ ନିଜେ ହାତରେ ସଫା କରନ୍ତି ।

ଜଣଙ୍କ ପରେ ଜଣେ କହି ଚାଲିଥା'ନ୍ତି । କାହା ଭାଷଣ ଭଲ ଲାଗୁଥାଏ ତ କାହାର ଭଲ ଲାଗୁ ନ ଥାଏ । ତାପରେ ଚିତ୍ତଭାଇଙ୍କ ପାଳି ପଡ଼ିଲା । ସେ ମାତ୍ର ପାଞ୍ଚ ମିନିଟ୍ କିମ୍ବା ଆହୁରି କମ୍ ସମୟ କହି ବସି ପଡ଼ିଲେ । କଥାଗୁଡ଼ା ତାଙ୍କର ଅସ୍ପଷ୍ଟ ଥିଲା । ସତ କଥା, କ'ଣ କହିଲେ ଆଦୌ ବୁଝି ହେଲାନାହିଁ । ନିରାଶ ଲାଗିଲା । ତାଙ୍କ ବିଷୟରେ ଶୁଣିଥିବା କଥା ଠାରୁ ପ୍ରତ୍ୟକ୍ଷ ଅନୁଭୂତି ଯେ ଭିନ୍ନ ହୋଇପାରେ, ବିଶ୍ୱାସ ହେଲାନାହିଁ । ଧାରଣା ଥିଲା ସମସ୍ତ ବିଶିଷ୍ଟ ବ୍ୟକ୍ତି ଭଲ ଭାଷଣ ଦେଇପାରନ୍ତି । ଏଠାରେ କିନ୍ତୁ ଦୁଇଟି କଥା ମଧ୍ୟରେ ମେଳ ଆସୁ ନ ଥିଲା ।

ଆଉ ଥରକର କଥା । ଭଦ୍ରକ ସାହିତ୍ୟ ପରିଷଦର କୌଣସି ଗୋଟିଏ

ସଭାକୁ ସେ ନିମନ୍ତ୍ରିତ ହୋଇ ଆସିଥାନ୍ତି । ମିଶିବାର ସୁଯୋଗ ଆସିଲା । ସେ ତ ପୂରାପୂରି ମିଶିଗଲେ । ତାଙ୍କୁ ସେଦିନର କଥା ମନେ ପକାଇ ଦେଇ ପଚାରିଲି, ଆପଣ ସେଦିନ କାହିଁକି କିଛି କହିଲେ ନାହିଁ ? ସେ ସଂକୋଚ କଲାଭଳି ଅତି ଧୀର ସ୍ୱରରେ କହିଲେ, ଏତେ ଲୋକଙ୍କୁ ଦେଖି ଡ଼ର ଲାଗିଲା, କ'ଣ କହିବି ଭାବି ପାରିଲି ନାହିଁ । ଲାଗିଲା କେମିତି ସାଙ୍ଗ ପାଖରେ ନିଜେ ବସିଥିବା କର୍ମକୁ ନେଇ ସ୍ୱୀକାରୋକ୍ତି ସେ ରଖୁଛନ୍ତି ।

ଏହି ଘଟଣାର ପ୍ରାୟ ୩ ବର୍ଷ ପରେ ଭଦ୍ରକ କଲେଜର କୌଣସି ଗୋଟିଏ ହଷ୍ଟେଲର ଉତ୍ସବରେ ସେ ଅତିଥି ହୋଇ ଆସିଥାନ୍ତି । ଛୋଟ ସଭାଟିଏ ହେଉଥାଏ । ମୋରି ବୟସର ସମସ୍ତଙ୍କୁ ଉପଲକ୍ଷ୍ୟ କରି ସେଦିନ ସେ ଯାହା କହିଥିଲେ ତାହା ଆଜି ବି ମୋର ମନେ ଅଛି । ଗୁରୁବାଦ ଓ ପରମ୍ପରାସର୍ବସ୍ୱ ଚିନ୍ତାଧାରାକବଳିତ ଯୁବମାନସ କିପରି ନୂଆ କଥା ଦେଖିବାକୁ ଅକ୍ଷମ, ତାହା ହିଁ ଥିଲା ତାଙ୍କର କହିବାର କଥା । ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର କରିଦେଇ ଆମେ ତାଙ୍କଠାରୁ ପୃଥକ୍ ହୋଇଯାଇଛୁ । ଗୁରୁ ସହଚାରୀ ଭାବରେ ଆମକୁ ବାଟ ଦେଖାଇବେ । କିନ୍ତୁ ଚାଲିବାର ଦାୟିତ୍ୱ ଆମର- ଏହିଭଳି ସେଦିନର କେତୋଟି କଥା ମନକୁ ଭାରି ଛୁଇଁ ଥିଲା । ତାହା ଆଜି ପର୍ଯ୍ୟନ୍ତ ମୋ ଜୀବନର ଅନ୍ୟତମ ପ୍ରେରଣାର କଥା ହୋଇରହିଛି ।

ଶାନ୍ତିନିକେତନରେ ଏମ୍.ଏ. ପଢ଼ିବା ସମୟରେ 'ନବରବି'ରେ 'ଜାତିରେ ମୁଁ ଯବନ' ଧାରାବାହିକ ଭାବେ ବାହାରୁଥାଏ । ମୋର ରୁମ୍‌ମେଟ୍ ଓଡ଼ିଆ ବିଭାଗର ଛାତ୍ର ହରିହର ମହାନ୍ତି ଓ ମୁଁ ପତ୍ରିକାଟି ପାଇବା ମାତ୍ରେ ସାଙ୍ଗରେ ବସି ପଢୁଁ । ଆଲୋଚନା କରୁ । କଥାଗୁଡ଼ା ନୂଆ ନୂଆ ଲାଗେ । ବଂଧୁ ମହାନ୍ତି ମଧ ନୂଆ କଥାରେ ରୁଚି ରଖିବା ଲୋକ । ନୂଆ ଭାବନା ମନ ଭିତରେ ଉଙ୍କି ମାରେ । ନୂଆ ପ୍ରସ୍ଥ ଖୋଲିବାର ଚେଷ୍ଟାକରେ । ଭିନ୍ନ ହେବାର ପ୍ରବୃତ୍ତି ଭିତରେ ଗଳୁରେଇ ଉଠି ପୁଣି ମଉଳିଯାଏ । ସତରେ ଯବନଟିଏ ହେବା ଭାରି କଷ୍ଟ । ତଥାପି ଆମ ଭିତରେ ଜଣେ କିଏ ଭିନ୍ନ ହେବାପାଇଁ ପ୍ରେରଣାର ଉତ୍ସ ହୋଇ ଠିଆ ହୋଇଛି ତାହା ମନ ଭିତରେ ଆଶା ସଞ୍ଚାର କରେ । ତାଙ୍କ ପ୍ରତ୍ୟୟ ମଣ୍ଡଳର ସଂସ୍ପର୍ଶରେ ଆସିବାକୁ ଭାରି ଭଲ ଲାଗୁଥାଏ । କିନ୍ତୁ ଏକ ଅବୋଧ୍ୟ ଭାବ ରହିଯାଉଥାଏ ।

ପରବର୍ତ୍ତୀ ସମୟରେ ବିଭିନ୍ନ ସ୍ଥାନରେ ଚିତ୍ତଭାଇଙ୍କ ସହ ମିଶିବାର ସୁଯୋଗ ଆସିଛି । କେଉଁଠି ସଭାସମିତିରେ ଶ୍ରୋତାଭାବରେ ତ' କେଉଁଠାରେ ଏକତ୍ର ଦରୀ

ଉପରେ ବା ପକ୍‌କା ଚଟାଣ ଉପରେ ଆଂଠୁରେ ଆଂଠୁ ମିଶାଇ କିଛି ସମଭାବାପନ୍ନ ବଂଧୁମାନଙ୍କ ମେଳରେ । କେତେ କଥା ତାଙ୍କ ସହ ଆଲୋଚନା ହୋଇଛି । ପ୍ରତ୍ୟେକ ଥର ତାଙ୍କ ସହ ମିଶିବା ସୁଯୋଗରେ ମୋର ଦୃଷ୍ଟିଭଙ୍ଗୀ କିଛି କିଛି ବଦଳିଛି । ସଂପର୍କର ପୃଥିବୀ ମୋ ପାଇଁ ଭିନ୍ନ ହୋଇଛି । ତାଙ୍କ ସହ ମିଶିବାର ସୁଯୋଗ ଆସିବାର ଅବ୍ୟବହିତ ପୂର୍ବରୁ ମନକୁ ଆସେ କ'ଣ ଆଉ ସେ ନୂଆ କଥା କହିବେ ଯେ ଆଶା ରଖିବି । କିନ୍ତୁ ତାଙ୍କ ସହ ମିଶିବା ପରେ ତାଙ୍କର କେତୋଟି କଥା ପୁଣି ଚିନ୍ତାର ଖୋରାକ ଯୋଗାଏ । ଏଣୁ ପ୍ରତ୍ୟେକ ମିଶିବା ନୂଆ ଭଳି ଲାଗେ ।

ଚିଉଭାଇଙ୍କ ସହ ମିଶିବାରେ ଅନ୍ୟତମ ଲାଭ ହେଉଛି ସେ ମୋତେ ସ୍ୱୀକାର କରନ୍ତି । ମୁଁ ଯେ ଏକ ବ୍ୟକ୍ତିତ୍ୱ ଯାହାର ଏକ ମାନସମଣ୍ଡଳ ରହିଛି– ଏହାକୁ ସେ ଗ୍ରହଣ କରି କଥା ଆରମ୍ଭ କରନ୍ତି । ତାଙ୍କୁ ଯେ ଜଣେ ପୂର୍ଣ୍ଣତଃ ଗ୍ରହଣ କରିନେଉ ବୋଧହୁଏ ତାହା ସେ ଚାହାଁନ୍ତି ନାହିଁ । ଏଣୁ ଡାଏଲଗ୍ ଆରମ୍ଭ କରନ୍ତି । ଆମେ ଯେହେତୁ ଡାଏଲଗ୍ ସହ ଅଭ୍ୟସ୍ତ ନୋହୁଁ ମନେହୁଏ କଥା କଟା କଟି ମାଧ୍ୟମରେ ସେ ତାଙ୍କ ନିଜ ମତକୁ ଆମ ଉପରେ ଲଦି ଦେଉଛନ୍ତି । ଲାଗେ ସେ ଆମକୁ ଗିଳିପକାଇ ନିଜର ବିଦ୍‌ବତ୍ତାକୁ ଜାହିର କରିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ଆମର କଥା ଶୁଣିବା ପାଇଁ ଯେ ତାଙ୍କର ଅଶେଷ ଧୈର୍ଯ୍ୟ ଏହା ସ୍ପଷ୍ଟ ହୋଇ ଜଣାପଡ଼େ । ତାପରେ ଆମର ଭିତିଭୂମିଟିକୁ ସେ ଜାଣିବା ପରେ ସେଥିରେ ଥିବା ଆବର୍ଜନାକୁ ହଟାଇବାକୁ ଚେଷ୍ଟା କରନ୍ତି । କିନ୍ତୁ ଆମେ ଆମର ଆବର୍ଜନା ସହ ଏପରି ସଂଶ୍ଳିଷ୍ଟ ଏବଂ ତାକୁ ଏପରି ଭଲପାଉ ଯେ ତାକୁ ହଟାଇବା ପାଇଁ ତାଙ୍କର ଉଦ୍ୟମ ଆମକୁ ଅନେକ ସମୟରେ ଭଲଲାଗେ ନାହିଁ । ଏବଂ ଆମେ କହୁ ସେ ଆମ ଉପରେ ଜାହିର କରି ନିଜର ଶ୍ରେଷ୍ଠତ୍ୱକୁ ଲଦି ଦେବାକୁ ଚେଷ୍ଟା କରୁଛନ୍ତି । ଅନେକ ସମୟରେ ସେ ଏହିପରି ଭୁଲ୍ ବୁଝାମଣାର ଶିକାର ହୋଇଥାନ୍ତି । କିନ୍ତୁ ସେ ଏତେ ନିର୍ଭୀକ ଯେ ସେ ଜାଣନ୍ତି ଏହି ଭୁଲ୍ ବୁଝିବାଟା ବେଶୀ ସମୟ ରହିବ ନାହିଁ ।

ତାଙ୍କର ସହଚାରୀ ହେବାକୁ ଚେଷ୍ଟା କରିଛି । ସେଥିରୁ ଯଥେଷ୍ଟ ଆନନ୍ଦ ପାଇଛି । ଗତ ତିରିଶ ବର୍ଷ ମଧ୍ୟରେ ସେ ଜଣେ ବକ୍ତା ଓ ମୁଁ ତାଙ୍କ ଶ୍ରୋତା ଏହି ସଂପର୍କରୁ ଉର୍ଦ୍ଧ୍ୱକୁ ଉଠିବାକୁ ଚେଷ୍ଟାକରିଛି । ପୁରୀରେ ମୋର ଗତ ଦଶବର୍ଷର ରହଣି ମଧ୍ୟରେ ତାଙ୍କଠାରୁ ବହୁତ କିଛି ପାଇଛି । ତାଙ୍କୁ କିଛି ଦେଇନି ।

*ଚନ୍ଦ୍ରେଜୟ ଦ୍ୱିବେଦୀ*

*ଦଉଡୋଟା(ପୁରୁଣା ସଦର ଥାନା ଲେନ୍), ପୁରୀ-୭୫୨୦୦୧*

# ଯୋରନ୍ଦାରୁ ପଣ୍ଡିଚେରୀ

ସମ୍ବଲପୁର ଜିଲ୍ଲାର କୁଚିଣ୍ଡା ସବ୍‌ଡ଼ିଭିଜନ୍‌ରେ ଝରାନିକ୍ତିମାଳ ଓ ଖମାରବାହାଲ ନାମରେ ଦୁଇଗୋଟି ଗାଁ ଅଛି । ଏହି ଦୁଇ ଗାଁ ମଝିରେ ଶାଳଗଛପୂର୍ଣ୍ଣ ବଣରେ ଗୋଟିଏ ଜାଗା ଥିଲା । ସେ ସ୍ଥାନରେ ଢେଙ୍କାନାଳ ଜିଲ୍ଲାର ଯୋରନ୍ଦାଗାଦିର ମହିମାଧର୍ମର କୌପୀନଧାରୀ ମହିମାସମାଜର ଜଣେ ବୃଦ୍ଧ ସନ୍ୟାସୀ ୧୯୫୬ ମସିହାରେ ଆଶ୍ରମଟିଏ ପ୍ରତିଷ୍ଠା କରିଥିଲେ । ତାଙ୍କ ନାମ ଥିଲା ଶ୍ରୀମଦ୍ ଅନନ୍ତ ଚରଣ ବାବା । ଭାଗବତର ଏକାଦଶ ସ୍କନ୍ଧଟି ତାଙ୍କର ମୁହେଁ ମୁହେଁ ଥିଲା । ସେ ସେତେବେଳେ ସନ୍ଧ୍ୟାସମୟରେ ଭକ୍ତଗଣଙ୍କ ମହଲରେ ତାଙ୍କର କୁଟୀରରେ ପ୍ରବଚନ ଦେଉଥିଲେ । ଭାଗବତର ବାଣୀକୁ ବୁଝାଉଥିଲେ । ଏଣୁ ସେ ଅଞ୍ଚଳର ଲୋକେ ମହାତ୍ମାଙ୍କ ପ୍ରବଚନ ଶୁଣିବା ଲାଗି ହିଂସ୍ରଜନ୍ତୁମାନଙ୍କ ବିପଦକୁ ଭ୍ରୂକ୍ଷେପ ନ କରି ଆସୁଥିଲେ । ଧୀରେ ଧୀରେ ତାଙ୍କର ମାହାତ୍ମ୍ୟ ଦୂର ଦୂରାନ୍ତର ପ୍ରଚାର ହେବାକୁ ଲାଗିଲା ।

ଶ୍ରୀମଦ୍ ଅନନ୍ତ ଚରଣ ବାବା ମହିମାଧର୍ମର ସନ୍ୟାସୀ ହୋଇଥିବାରୁ ସେହିବର୍ଷ ସେହି ଅଞ୍ଚଳରେ ଭକ୍ତମାନଙ୍କ ଦାତବ୍ୟ ଅର୍ଥରୁ ବାଲ୍ୟଲୀଳା ସହ ଯଜ୍ଞଅନୁଷ୍ଠାନ କଲେ । କିନ୍ତୁ ସେ ମହିମା ଧର୍ମର ସୀମିତ ନୀତି ନିୟମର ଗଣ୍ଡିରେ ଆବଦ୍ଧ ନଥିଲେ । ବିଭିନ୍ନ ଧର୍ମର ଲୋକେ ମଧ୍ୟ ନିଜ ନିଜ ଧର୍ମର ଅନୁଷ୍ଠାନ କରିପାରିବାର ବ୍ୟବସ୍ଥା କରିଥିଲେ ।

ଉକ୍ତ ଦୁଇଗୋଟି ଗାଁ ହେଉଛି ମୋର ବାପାଙ୍କ ମାମୁଁ ଘର ଗାଁ । ନିକ୍ତିମାଳରେ ବାପାଙ୍କ ବଡ଼ ମାମୁଁଙ୍କ ଛୋଟପୁଅ ମଦନମୋହନ ପଟେଲ ରହନ୍ତି । ସେ ଆମ ଘରକୁ ଆସୁଥିଲେ । ବୋଧହୁଏ ତାଙ୍କଠାରୁ ମୁଁ ସେଠାରେ ଯଜ୍ଞ ହେଉଥିବାର ଖବର ଶୁଣିବାକୁ ପାଇଲି । ମୋତେ ସ୍କୁଲକୁ ଯାଇ ପାଠ ପଢ଼ିବାକୁ ଭଲ ଲାଗୁନଥାଏ । ଏଣୁ ଦୁଇ ବା ତିନି କ୍ଲାସ୍ ପଢ଼ି ଆଉ ସ୍କୁଲକୁ ପଢ଼ିବାକୁ ଗଲି ନାହିଁ । ଘରେ ରହି ଚାଷବାସ ବା ଘରର ଗାଈ ବଳଦ ମାନଙ୍କ ସେବା କରିବାରେ ଲାଗିଗଲି । କିନ୍ତୁ ଆମ ଗାଁକୁ ଯଦି କୌଣସି ସାଧୁ ସନ୍ଥ ବା ଝୁଲିମୁଣା ଧରିଥିବା

ନେତା ଆସିଲେ ସେମାନଙ୍କୁ ଦେଖିବାକୁ ମୋତେ ବହୁତ ଭଲ ଲାଗୁଥିଲା । ଏବଂ ମୁଁ ଭାବେ ମୁଁ କିପରି ଏମାନଙ୍କ ପରି ସାଧୁହେବି ବା ନେତାହୋଇ ଗାଁ ଗାଁ ଯାଇ ଭଗବାନଙ୍କ କଥା ଶୁଣାଇବି ବା ଭାଷଣଦେବି । ପୁଣି ମୁଁ ଭାବେ ଯେ ମୁଁ କିଛି ପଢ଼ାପଢ଼ି କରିନାହିଁ, ଆଉ କିପରି ଲୋକମାନଙ୍କ ଆଗରେ ଭାଷଣ ଦେବି ?

ଯାହାର ଯେଉଁ ଜିନିଷ ପ୍ରତି ବେଶି ଆକର୍ଷଣ ଥାଏ ସେ ସେହି ଜିନିଷକୁ ନ' ପାଇଲା ପର୍ଯ୍ୟନ୍ତ ତାହାକୁ ପାଇବାଲାଗି ଚେଷ୍ଟା କରୁଥାଏ । ମୁଁ ତିନି ମାସରେ ବା ଚାରିମାସରେ ଥରେଲେଖାଁ ବାବାଙ୍କୁ ଦେଖା କରିବାକୁ ଯାଉଥାଏ । ଏହି ପରି ହେଉ ହେଉ ତାଙ୍କ ସହିତ ମୋର ଘନିଷ୍ଠତା ବଢ଼ିଗଲା ।

ମୁଁ ଯେପରି ବାବାଙ୍କୁ ଅତି ସ୍ନେହ ଶ୍ରଦ୍ଧା କରୁଥାଏ ସେ ମଧ୍ୟ ମୋତେ ସେପରି ବହୁତ ଭଲ ପାଉଥିଲେ । ମୁଁ ଦିନେ ତାଙ୍କ କୁଟୀରରେ ଦେଖିଲି ଯେ ଅନେକ ବଡ଼ ବଡ଼ ପୁସ୍ତକ ଥାକ ଥାକ କରି ରଖାହୋଇଛି । ପ୍ରଥମେ ମୋର ଦୃଷ୍ଟି ପଡ଼ିଲା "ଓଡ଼ିଶାର ମହିମାଧର୍ମ" ପୁସ୍ତକ ଉପରେ । ମୁଁ ତାକୁ ଉଠାଇ ଆଣିଲି । କୁଟୀର ବାହାରର ଖୋଲା ଜାଗାରେ ତାଙ୍କର ମଶିଣା ଆସନ ଉପରେ ସେ ବସି ଥିଲେ । ତାଙ୍କୁ ପୁସ୍ତକଟି ଦେଖାଇ କହିଲି, "ଆଜ୍ଞା ! ମୁଁ ଏହି ପୁସ୍ତକଟି ପଢ଼ି ପାରିବି କି ? ସେ ଅତି ଆନନ୍ଦରେ କହିଲେ, "ହଁ ବାପା, ଏ ସବୁ ପୁସ୍ତକ ଆଉ କାହା ପାଇଁ ? ତୁମେମାନେ ନ ପଢ଼ିଲେ କିଏ ପଢ଼ିବ ?"

"ଓଡ଼ିଶାର ମହିମାଧର୍ମ" ପୁସ୍ତକକୁ ମୁଁ ଗୋଟିଏ ଶାଳଗଛ ଛାଇରେ ବସି ପଢ଼ିବାକୁ ଆରମ୍ଭ କରି ଦେଖିଲି ଯେ ଉକ୍ତ ପୁସ୍ତକର ଲେଖକ ହେଉଛନ୍ତି ଶ୍ରୀ ଚିତ୍ତରଂଜନ ଦାସ । ସେ ପୁସ୍ତକ କେବଳ ବେଦ, ଉପନିଷଦ ଶ୍ଳୋକମାନଙ୍କରେ ପରିପୂର୍ଣ୍ଣ । ପୁସ୍ତକଟି ପଢ଼ିବା ଶେଷ କଲାପରେ ମୋର ଜୀବନଧାରା ମଧ୍ୟ ପରିବର୍ତ୍ତନ ହୋଇଗଲା । ତା'ପରେ ମୁଁ ମହିମା ଧର୍ମକୁ ଗ୍ରହଣ କଲି ଏବଂ ତାଙ୍କ ଆଶ୍ରମରେ ମୁଁ କିଛି ମାସ ରହିଲି । ମୁଁ ଭାବୁଥାଏ କ'ଣ ଏହି ଜୀବନରେ ଆଉ ମୋର ସେହି ଲେଖକଙ୍କ ସହ ସାକ୍ଷାତ ହୋଇ ପାରିବ ନାହିଁ ?

"ଏ ମନ ପାଞ୍ଚୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।"

ଅବଶ୍ୟ କେଉଁ ବର୍ଷ ମୋର ମନେ ନାହିଁ । ମୁଁ "ନବଜ୍ୟୋତି"କୁ ଖବର କାଗଜ ପଢ଼ିବାକୁ ଆସିଥାଏ । ସେ ସମୟରେ ଶ୍ରୀ ଚିତ୍ତରଂଜନ ବାବୁ ପଣ୍ଡିଚେରୀ ଆସି ଥାଆନ୍ତି । ଶ୍ରୀ କାଙ୍ଗାଳି ଚରଣ ପତି(ପ୍ରପତ୍ତି)ଙ୍କ ରୁମରେ ବୋଧେ ବସିଥିଲେ । ସେଠାରୁ ବାହାରି ନବଜ୍ୟୋତି କାର୍ଯ୍ୟାଳୟର ବାରଣ୍ଡାରେ ଛିଡ଼ାହୋଇଥିଲେ । ମୁଁ କାହାଠାରୁ ଶୁଣିଥାଏ ଯେ ଶ୍ରୀ ଚିତ୍ତରଂଜନ ଦାସ ପଣ୍ଡିଚେରୀ ଆସିଛନ୍ତି । ମୁଁ

ନବଜ୍ୟୋତି କାର୍ଯ୍ୟାଳୟର ସମ୍ମୁଖ ଦ୍ୱାରକୁ ଖୋଲି ଭିତରକୁ ଗଲି । ହଠାତ୍ ତାଙ୍କ ଉପରେ ମୋର ନଜର ପଡ଼ିଲା । ମୁଁ ଭାବିଲି ଇଏ ନିଶ୍ଚୟ ଚିତ୍ତରଂଜନ ଦାସ ହୋଇଥିବେ । ମୁଁ ଯାହାଙ୍କୁ ଦୀର୍ଘଦିନ ହେଲା ଦେଖିବା ଲାଗି ଇଚ୍ଛା ପୋଷଣ କରିଥିଲି ସେ ଇଚ୍ଛା ମୋର ପୂର୍ଣ୍ଣ ହେଲା । ସେ ବୋଧେ ଖଣ୍ଡେ ସାଧା ଧୋତି ଓ ଖଦଡ଼ ପଞ୍ଜାବି ପିନ୍ଧିଥିଲେ । ମୁଁ ତାଙ୍କୁ ନମସ୍କାର କଲି । ସେ ହସି ହସି ପ୍ରତ୍ୟୁତ୍ତର ଦେଲେ । କିନ୍ତୁ ସେ ମୋତେ କ'ଣ କହିଲେ ବା ମୁଁ ତାଙ୍କୁ କ'ଣ ପଚାରିଲି ତାହା ମୋର ମନେ ନାହିଁ । ଯେଉଁ ଲେଖକଙ୍କର ପୁସ୍ତକ ପଢ଼ି ମୁଁ କାହିଁ ଝରାନିଭ୍ରିମାଲରୁ ଢେଙ୍କାନାଳ ଜିଲ୍ଲାର ଯୋରନ୍ଦାଗାଦି କୌପୀନଧାରୀ ମହିମା ସମାଜରେ ଏବଂ ସେଠାରୁ ପଣ୍ଡିଚେରୀର ଶ୍ରୀଅରବିନ୍ଦ ଆଶ୍ରମରେ ପହଞ୍ଚିଲି ଓ ତାହାକୁ ପାଥେୟ କରି ପଥିକ ପରି ବାଟ ଚାଲୁଛି, ତାଙ୍କୁ ଅନ୍ତରର କୃତଜ୍ଞତା ଜଣାଇବା ପାଇଁ ଭାଷା ପାଉନାହିଁ । ଏଣୁ ସେ ମୋର ଚିର ନମସ୍ୟ ଓ ତାଙ୍କ ଠାରେ ମୁଁ ଚିର ଋଣୀ କାହିଁକି ନା ତାଙ୍କର ଆଧ୍ୟାତ୍ମିକ ପୁସ୍ତକ 'ଓଡ଼ିଶାର ମହିମାଧର୍ମ' ପଢ଼ି ଏକ ପରମ ଦିବ୍ୟ ମହିମାର ଅନୁସନ୍ଧାନରେ ପଣ୍ଡିଚେରୀ ଆସି ପାରିଲି ଏବଂ ସ୍ୱୟଂ ଜଗଦ୍‌ଜନନୀ ଶ୍ରୀମାଙ୍କର ଦର୍ଶନ ପାଇ ତାଙ୍କର କୋଳରେ ଆଶ୍ରୟ ପାଇ ପାରିଲି ।

*ଗୁଣାନନ୍ଦ ଦାସ*
*ଶ୍ରୀ ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ*

# ତାଙ୍କ ପ୍ରତିଭାର ଦୀପ୍ତି

*(୧୯୯୮ ମସିହା ବିଷୁବ ମିଳନ ଉତ୍ସବରେ ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କୁ ସମ୍ମାନ ଜନକ 'ବିଷୁବ-ପୁରସ୍କାର' ପ୍ରଦାନ ଅବସରରେ)*

ଚଳିତ ବର୍ଷର ସମ୍ମାନଜନକ ବିଷୁବ ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଇଛି ଓଡ଼ିଶାର ଅନ୍ୟତମ ଚିନ୍ତାନାୟକ ମନସ୍ୱୀ ଚିତ୍ତରଂଜନ ଦାସଙ୍କୁ । ୧୯୨୩ ଅକ୍ଟୋବର ୨୯ ତାରିଖରେ ଭୂମିଷ୍ଠ ହୋଇଥିବା ଏହି ବରପୁତ୍ର ଜଣେ କୃତୀ ଛାତ୍ର ଭାବରେ ରେଭେନ୍‌ସା ମହାବିଦ୍ୟାଳୟରେ ଆଇ.ଏ. ଶ୍ରେଣୀରେ ଅଧ୍ୟୟନ କରୁଥିଲେ । କିନ୍ତୁ ସ୍ୱଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ୧୯୪୨ ମସିହା ଅଗଷ୍ଟ ବିପ୍ଳବରେ ସେ ଯୋଗ ଦେଲେ ଓ କାରାବରଣ କଲେ । ୧୯୪୫ ମସିହାରେ ଜେଲ୍‌ରୁ ଖଲାସ ହେବାପରେ ସେ ହୋଇଗଲେ ଏକ ଭିନ୍ନ ମଣିଷ ।

ଉଚ୍ଚ ଶିକ୍ଷା ପାଇ ଉଚ୍ଚ ପଦାଭିଷିକ୍ତ ହୋଇ ବିଳାସବ୍ୟସନପୂର୍ଣ୍ଣ ଜୀବନଯାପନ କରିବାର ସ୍ୱପ୍ନ ଉଭେଇ ଗଲା । ସେ ହୋଇଗଲେ ମାଟିର ମଣିଷ, ସମାଜର ତଳେ ପଡ଼ି ରହିଥିବା ମଣିଷମାନଙ୍କର ମଣିଷ, ଜୀବନ ଓ ଜିଜ୍ଞାସାର ମଣିଷ । ସାଧାରଣ ମଣିଷଙ୍କ ମୁହଁରେ ଟେନାଏ ହସ କି ମନରେ ଟିକେ ଆନନ୍ଦର ରସ ସଞ୍ଚାର ନିମନ୍ତେ ସେ ସାହିତ୍ୟର ସାଧନାପଥରେ ପଥିକ ହୋଇଗଲେ ।

ସବୁରି ମୁହଁରେ ଆଦରର 'ଚିଉଭାଇ' ୧୯୪୫ରେ ଗଲେ ଶାନ୍ତି ନିକେତନରେ ଦର୍ଶନ ଅଧ୍ୟୟନ ନିମନ୍ତେ । ସେଠାରେ ତିନିବର୍ଷ ବିଦ୍ୟାର୍ଥୀ ଜୀବନ ଅତିବାହିତ କରିବା ପରେ ବିଦ୍ୟା ଭବନରେ ଗବେଷକ ସାଜନ୍ତି । ଓଡ଼ିଶାର ଜନ ମାନସରେ ବିସ୍ମୃତ ମହନୀୟ ସାରସ୍ୱତ ଓ ସାଂସ୍କୃତିକ ଦିଗ୍‌ବଳୟକୁ ସେ ନିଜର ସାଧନା ବଳରେ ଉଦ୍ଭାସିତ କରନ୍ତି । ୧୯୪୮ ମସିହାରୁ ୧୯୯୮ ମସିହା ଦୀର୍ଘ ପଚାଶ ବର୍ଷ କାଳ ପୃଥିବୀର ବିଭିନ୍ନ ସ୍ଥାନରେ ଅବସ୍ଥାନ କଲେ ବି ତାଙ୍କର ଲେଖନୀ ଚଳ ଚଞ୍ଚଳ ହୋଇ ଅବିଶ୍ରାନ୍ତ ଗତିରେ ଆଗେଇ ଚାଲିଛି । ବିଶ୍ୱର ମହାନ୍ ଚିନ୍ତାର ସ୍ରୋତକୁ ସେ ଭଗୀରଥଙ୍କ ଭଳି ବୁହାଇ ଆଣିଛନ୍ତି ଓଡ଼ିଆ ସାହିତ୍ୟକୁ, ଓଡ଼ିଶା ମାଟିକୁ । ତାଙ୍କର କୃତି ବିପୁଳ, କୀର୍ତ୍ତି ସମୁଜ୍ଜ୍ୱଳ ।

ଏପ୍ରିଲ ମାସକୁ ଅତ୍ୟନ୍ତ ଦୁଃଖଦାୟକ (Cruelest) ମାସ ବୋଲି ଜଣେ ଇଂରେଜ କବି କହିଥିଲେ ହେଁ ଓଡ଼ିଶାରେ ଏହା ସାରସ୍ୱତ ସ୍ରଷ୍ଟାମାନଙ୍କ ପାଇଁ ଆନନ୍ଦ ଓ ଉଲ୍ଲାସର ମାସରେ ପରିଣତ ହୋଇଯାଇଛି । ୧୯୪୭ ଅଗଷ୍ଟ ୮ ତାରିଖରେ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ନବ ଉତ୍କଳର ନିର୍ମାତା ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରକାଶିତ 'ପ୍ରଜାତନ୍ତ୍ର' କେବଳ ଏକ ସମ୍ବାଦପତ୍ର ଭାବେ ସମାଜ ଓ ରାଜନୀତିକୁ ପ୍ରଭାବିତ କରିନାହିଁ, ଓଡ଼ିଶାର ସାଂସ୍କୃତିକ ବିପ୍ଳବ କ୍ଷେତ୍ରରେ ସୃଷ୍ଟି କରିଛି ଏକ ଜ୍ୟୋତିର୍ବଳୟ ।

ପ୍ରଜାତନ୍ତ୍ରରେ ସାହିତ୍ୟ ବିଭାଗ ସୃଷ୍ଟି ଓ ପରେ ପରେ ଝଙ୍କାର ପ୍ରକାଶନ ସାଙ୍ଗକୁ ବିଷୁବ ମିଳନ ଉତ୍ସବର ଆୟୋଜନ ଗତ ଅର୍ଦ୍ଧଶତାବ୍ଦୀ ଧରି ବୌଦ୍ଧିକ ଓ ସାରସ୍ୱତ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ହୋଇ ଉଠିଛି ଭାବ ବିନିମୟର ଏକ ମିଳନ ପୀଠ । ସମଗ୍ର ଓଡ଼ିଶାରେ ଏକ ସାହିତ୍ୟିକ ପରିବାର ସୃଷ୍ଟି କରିବା ସହ ବିଷୁବ ମିଳନ ଏକ ଅନନ୍ୟ ସାଧାରଣ ସାହିତ୍ୟ ପର୍ବରେ ରୂପାୟିତ ହୋଇଛି ଓଡ଼ିଶାର ପୁରପଲ୍ଲୀରେ । ଏହି ଉତ୍ସବରେ ପ୍ରଥମେ ସାହିତ୍ୟିକମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ଯେଉଁ ପ୍ରୀତି-ଉପହାରର ପରମ୍ପରା ଆରମ୍ଭ ହୋଇଥିଲା, କ୍ରମେ ତାହା ଏକ ସମ୍ମାନଜନକ ପୁରସ୍କାର ପ୍ରଦାନ ବ୍ୟବସ୍ଥାରେ ପରିଣତ ହୋଇଛି । ଏହି

ପୁରସ୍କାରର ମୂଲ୍ୟଠାରୁ ଅର୍ଥ ଆକାରରେ ଅଧିକ ମୂଲ୍ୟର ପୁରସ୍କାର ପ୍ରଦାନର ବ୍ୟବସ୍ଥା ଏବେ ଅନେକ ସଂସ୍ଥା ପକ୍ଷରୁ ଆରମ୍ଭ ହୋଇଥିଲେ ହେଁ ଏପର୍ଯ୍ୟନ୍ତ ଏହାର ମର୍ଯ୍ୟାଦା ଅମ୍ଳାନ ଓ ଅନନ୍ୟ । ନିକଟ ଅତୀତରେ ତାଙ୍କର ୭୫ତମ ଜନ୍ମ ଜୟନ୍ତୀରେ ଓଡ଼ିଶାର ଆଉ ଜଣେ ସୁସାହିତ୍ୟିକ ପ୍ରଫେସର ଦାଶରଥି ଦାସ ତାଙ୍କୁ ଲକ୍ଷ୍ୟ କରି ଲେଖିଥିଲେ– "ଜୀବନ ସମ୍ବନ୍ଧରେ ଅଭିଯୋଗ କରାଯାଏ ଯେ; ମଣିଷର ଯୌବନରେ ପ୍ରଜ୍ଞା ନଥାଏ, ଥାଏ କର୍ମ ଦକ୍ଷତା । ବାର୍ଦ୍ଧକ୍ୟରେ ପ୍ରଜ୍ଞା ଅର୍ଜିଲାବେଳକୁ କର୍ମଦକ୍ଷତା ତାହା ହାତରୁ କାଢ଼ି ନିଆଯାଇଥାଏ । ଚିତ୍ତବାବୁଙ୍କ ଜୀବନ ବ୍ୟତିକ୍ରମ । ଏଠାରେ ବାର୍ଦ୍ଧକ୍ୟର ପ୍ରଜ୍ଞା ଓ ଯୌବନର କର୍ମଦକ୍ଷତା ଏକାଠି ଅଛନ୍ତି ଏକ ଘଟରେ । ତୀକ୍ଷ୍ଣ ବୁଦ୍ଧିର ଉଜ୍ଜ୍ୱଳତାରେ ଓ କ୍ଷୁରଧାର ବିଚାରର କ୍ଷମତାରେ ତାଙ୍କର ଲେଖା ଦିନକୁ ଦିନ ସମୃଦ୍ଧତର ହୋଇ ଚାଲିଛି ।"

ଆଜି ସେହି ମନସ୍ୱୀ ପ୍ରାବନ୍ଧିକଙ୍କୁ ବିଷୁବ ସମ୍ମାନ ପ୍ରଦାନରେ ସମଗ୍ର ରାଜ୍ୟରେ ସାହିତ୍ୟପ୍ରେମୀମାନଙ୍କ ମନରେ ଅପୂର୍ବ ଆନନ୍ଦର ଲହରୀ ଖେଳିଯାଇଛି । ସମସ୍ତଙ୍କ ସହ ଆମେ ମଧ୍ୟ ଏହି ଆନନ୍ଦ ଉଲ୍ଲାସରେ ଭାଗୀ ହୋଇ ଏହି ମହାନ୍ ସାରସ୍ୱତ ପ୍ରତିଭାଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଆଶା କରୁଛୁ ବିଷୁବର ଏହି ସାରସ୍ୱତ ସମ୍ମାନ କେବଳ ସର୍ବଭାରତୀୟ କାହିଁକି ଆନ୍ତର୍ଜାତିକ ସ୍ତରରେ ମଧ୍ୟ ତାଙ୍କର କୃତି ଓ କୀର୍ତ୍ତିର ସମୁଚିତ ମୂଲ୍ୟାୟନ ନିମନ୍ତେ ପଥ ଉନ୍ମୋଚନ କରିବ । ତାଙ୍କର ଦୀପ୍ତି ଓ ଦ୍ୟୁତିରେ ଓଡ଼ିଶାବାସୀଙ୍କ ସ୍ୱାଭିମାନର ଉଜ୍ଜ୍ୱଳ ବଳୟ ହେବ ସୁବିସ୍ତୃତ ।

*ନୃସିଂହ ଚରଣ ସାହୁ*
*ଟଙ୍କପାଣି ରୋଡ୍, ଭୁବନେଶ୍ୱର*

# ବିପଦ ସମୟରେ ସଖା

୧୯୮୮ ମସିହା । ମୁଁ ସେତେବେଳେ ରେଭେନ୍ସା କଲେଜରେ ପଢୁଥାଏ । ଆମ ଗାଁରେ ଶ୍ରୀଅରବିନ୍ଦ ପାଠଚକ୍ର ଥାଏ । ପ୍ରତି ରବିବାର ପାଠଚକ୍ର ହୁଏ । ପାଠଚକ୍ର ଜରିଆରେ ମୁଁ ଶ୍ରୀମା ଶ୍ରୀଅରବିନ୍ଦଙ୍କୁ ଜାଣିଲି । କଟକରେ ପଢ଼ିଲା ପରେ ମୁଁ ପ୍ରାୟ ମାତୃଭବନ ଯାଏ । ସେଠାରେ ପ୍ରଥମ ପରିଚିତ ଥିଲେ ଲୀଳାଅପା । ଦିନେ ଦେଖିଲି ମାତୃଭବନର ପୁରୁଣା ଦର୍ଶନ ରୁମ୍‌ର ସାମ୍ନା ଘରେ କିଛି ଲୋକ ବସି କ'ଣ

ଆଲୋଚନା କରୁଛନ୍ତି । ଖୁବ୍ ଜୋର୍‌ରେ ହସଖୁସି ହେଉଛନ୍ତି । ମୁଁ ଲୀଳାଅପାଙ୍କୁ ସେ ବିଷୟରେ ପଚାରିଲି । ସେ କହିଲେ ଚିତ୍ତଭାଇଙ୍କ କ୍ଲାସ ଚାଲୁଚି । ମନରେ ପ୍ରଶ୍ନ ଉଠିଲା କିଏ ଏଇ ଚିତ୍ତଭାଇ ? ତାଙ୍କର କ୍ଲାସ୍ ପୁଣି କ'ଣ ? ଷ୍ଟୁଡେଣ୍ଟ୍‌ମାନେ ସିନା କ୍ଲାସ୍ ଯାଆନ୍ତି, ଏ ବରବୁଢ଼ାମାନେ ପୁଣି କି କ୍ଲାସ୍ କରୁଛନ୍ତି ? ମନରେ କୌତୁହଳ ହେଲା- ଦିନ, ବାର, ସମୟ ବୁଝି ମୁଁ ଦିନେ ଚିତ୍ତଭାଇଙ୍କ କ୍ଲାସ୍‌କୁ ଗଲି । ଠିକ୍ ସମୟ ଆଗରୁ ଯାଇ ସେଠାରେ ହାଜର ହୋଇଗଲି । ଅନ୍ୟ କିଛି ଲୋକ ବି ଆସି ଯାଇଥାନ୍ତି । ଜଣକୁ ଅପେକ୍ଷା ଥାଏ, ସେ ହେଲେ ଚିତ୍ତ ଭାଇ । କିଛି ସମୟ ପରେ ଜଣେ ଲୋକ ଖଦଡ଼ ପୋଷାକ ପିନ୍ଧି ତଳକୁ ମୁଣ୍ଡ ପୋତି ସେ ଘରକୁ ପଶିଲେ । ସମସ୍ତେ ଠିଆହୋଇ ନମସ୍କାର କଲେ । ମୋ ଅନୁମାନରୁ ଜାଣିଲି ବୟସ ୫୦ ସେପାଖେ ହେବ । ମନରେ ଆହୁରି ପ୍ରଶ୍ନ ହେଲା ଇଏ କ'ଣ ସେହି ଚିତ୍ତ ଭାଇ ? ଏତେ ବୟସ୍କ ଲୋକ ସେ ପୁଣି ଭାଇ କିପରି ହେଲେ ? ସାର୍ କି ବାବୁ ଡାକିଲେ ଚଳନ୍ତା, ହଉ ଛାଡ଼ । ଦେଖିବା କ'ଣ ହେଉଛି । ମନକୁ ବୁଝାଇ ଚୁପ୍ ହୋଇ ବସିଲି । ଶ୍ରୀଅରବିନ୍ଦଙ୍କର 'ସିନ୍ଥେସିସ୍ ଅଫ୍ ୟୋଗ' ପଢ଼ା ହେଉଥିଲା । ଜଣେ ବାବୁ (ଭାଇ) କିଛି ଅଂଶ ପଢ଼ନ୍ତି, ଚିତ୍ତ ଭାଇ ବ୍ରେକ୍ ମାରିଲେ ସେ ରୁହନ୍ତି ଓ ପରେ ଚିତ୍ତଭାଇ ବୁଝାଇବା ଆରମ୍ଭ କରନ୍ତି । ଭାରି ମଜାଳିଆ ଢଙ୍ଗରେ ସେ ବୁଝାନ୍ତି । ଆମେ ହସି ହସି ବେଦମ ହୋଇଯାଉ । ସେଠାରେ ସଂସ୍କୃତ ଲେକ୍‌ଚରର ଥାଆନ୍ତି, ଫିଜିକ୍ସ ଅନର୍ସ ପିଲା ବି ଥାଆନ୍ତି, ଇଂରାଜୀ ଲେକ୍‌ଚରର୍ ଥାଆନ୍ତି, ଇଂଜିନିୟର ଥାଆନ୍ତି ଓ ଅନ୍ୟାନ୍ୟ ଜ୍ଞାନୀ ବ୍ୟକ୍ତିମାନେ ଥାଆନ୍ତି । ମୁଁ ଦେଖିଲି, ସେ ଶ୍ରୀଅରବିନ୍ଦଙ୍କର 'ସିନ୍ଥେସିସ୍ ଅଫ୍ ୟୋଗ' କେତେବେଳେ ସଂସ୍କୃତ ସାହିତ୍ୟର ଉଦାହରଣରେ ତ, କେତେବେଳେ ଫିଜିକ୍ସର ନିୟମାବଳୀର ଉଦାହରଣରେ, କେତେବେଳେ ଫିଲୋସଫିର ଉଦାହରଣରେ ତ ପୁଣି କେତେବେଳେ ଇଂରାଜୀ ଲିଟେରେଚର୍‌ର ଉଦାହରଣ ଦେଇ ବୁଝାନ୍ତି । ତା ସହିତ ଆମର ଓଡ଼ିଶାର ଗାଁ ଗହଳରେ ଚାଲୁଥିବା କଥିତ ଭାଷା ଓ ଓଡ଼ିଶା, ଭାରତ ତଥା ପୃଥିବୀର ଇତିହାସ ବି ବାଦ୍ ଯାଏ ନାହିଁ । ତାଙ୍କର ପ୍ରଥମ କ୍ଲାସ୍‌ରୁ ହିଁ ମୁଁ ସ୍ତମ୍ଭୀଭୂତ ହୋଇଗଲି । ଏତେ ଜ୍ଞାନ ଜଣେ ଲୋକ ପାଖରେ ଯେ ଥାଇପାରେ, ତାହା ମୁଁ ସେହିଦିନ ହିଁ ଜାଣିଲି । ତାଙ୍କର ଚାହାଣୀ, ତାଙ୍କର ମଜାଳିଆ କଥା ଓ ତାଙ୍କର ଜ୍ଞାନ ଗାରିମାକୁ ଦେଖି ସେହିଦିନ ହିଁ ତାଙ୍କ ପ୍ରେମରେ ମୁଁ ପଡ଼ିଗଲି । ତା'ପରେ ରୀତିମତ କ୍ଲାସ୍ ଯିବା ଆରମ୍ଭ କରିଦେଲି ।

ମୋର ଜଣେ ବ୍ରାହ୍ମଣ ସାଂଗ ଥାଏ, ପୁରଜିତ ମିଶ୍ର । ତାରି ପାଖରୁ ମୁଁ ପ୍ରଥମ ବ୍ରହ୍ମଚର୍ଯ୍ୟ ବିଷୟରେ ଜାଣିଲି । ସିଏ ମୋତେ ବ୍ରହ୍ମଚର୍ଯ୍ୟ ଧାରଣର

ଉପକାରିତା ବିଷୟରେ ଯେତିକି ସୁନ୍ଦର ଭାବରେ କହିଥିଲା, ବ୍ରହ୍ମଚର୍ଯ୍ୟ କ୍ଷୟର ଅପକାରିତା ବିଷୟରେ ତାଠାରୁ ଅଧିକ କରାଳ ଭାବରେ ବର୍ଣ୍ଣନା କରିଥିଲା । ମୋର ସେତେବେଳେ ଯୁବକ ବୟସ । ସ୍ୱପ୍ନରେ ବେଳେ ବେଳେ ଶୁକ୍ରକ୍ଷୟ ହୋଇଯାଉଥାଏ । ସେତେବେଳେ ମୁଁ ପୁରଚିତର କଥାକୁ ମନେ ପକାଇ ବହୁତ ଚିନ୍ତିତ ହୋଇଯାଉଥାଏ । ସେ ବିଷୟରେ ଯେତେ ଅଧିକ ଚିନ୍ତା କରୁଥାଏ, ସେତେ ଅଧିକ ଶୁକ୍ରକ୍ଷୟ ହେଉଥାଏ । ଏସବୁର ସମାଧାନ ପାଇଁ ଚିତ୍ତଭାଇଙ୍କୁ ପଚାରିବା ଅଧିକ ଉଚିତ ହେବ ଭାବି ତାଙ୍କୁ ପଚାରିବା ପାଇଁ ମନସ୍ଥ କଲି । ଭାରି ଲାଜ ଲାଜ ଲାଗୁଥାଏ । ଭାବିଲି ଡଙ୍ଗା ଯେତେବେଳେ ବୁଡ଼ିବାକୁ ବସିଲାଣି ସେତେବେଳେ ଲାଜ କରି ଲାଭ କ'ଣ ? କ୍ଲାସ୍ ପରେ ଚିତ୍ତଭାଇଙ୍କୁ ଏ ବିଷୟରେ ପଚାରିବା ପାଇଁ ମନରେ ଦମ୍ଭ ବାନ୍ଧିଲି ।

କ୍ଲାସ୍ ସରିବା ପରେ ଚିତ୍ତଭାଇ ଉଠିଲେ, ମୁଁ ଦୌଡ଼ିଯାଇ ତାଙ୍କ ପଛରେ ହାଜର ହୋଇଗଲି । ଅନ୍ୟମାନେ ବି ମୋ ପଛେ ପଛେ ହାଜର ହୋଇଗଲେ । ମୁଁ ଚିତ୍ତଭାଇଙ୍କୁ ପ୍ରଶ୍ନ କଲି-

-ଚିତ୍ତଭାଇ, ଗୋଟିଏ କଥା ?

-କ'ଣ କୁହ ।

-ଟିକିଏ ଏକୁଟିଆ ହେଲେ ଭଲ ହୁଅନ୍ତା ।

'ହଉ', କହି ସେ ମୋତେ ପଡ଼ିଆର ଗୋଟିଏ କୋଣକୁ ନେଇଗଲେ ।

ଏକାନ୍ତରେ ତାଙ୍କୁ ମୁଁ ମୋର ସମସ୍ୟା ଖୋଲି କହିଲି । ସେ ସହାନୁଭୂତି ସହିତ ମୋ କଥା ଶୁଣିଲେ ଓ ମୋ ସମସ୍ୟାର ଏକ ମନସ୍ତାତ୍ତ୍ୱିକ ସମାଧାନ କରିଦେଲେ । ମୋ ମନର ଆତ୍ମଗ୍ଲାନିକୁ ପୋଛିଦେଲେ ।

ଚାହୁଁଥିବା ଉତ୍ତରଟି ମୋତେ ମିଳିଗଲା । ମନ ଏକବାରେ ବୁଝିଗଲା । ସେହି ଦିନଠୁ ମୁଁ ତାଙ୍କ ପ୍ରେମରେ ପୂରା ପଡ଼ିଗଲି । ତା'ପରେ କ୍ଲାସରେ ସେହି ବିଷୟ ପଡ଼ିଲେ ମତେ ଥଟ୍ଟା କରି ଅନେକ କଥା କୁହନ୍ତି । କିନ୍ତୁ ଗୋଟିଏ କଥା– ତାଙ୍କର ଥଟ୍ଟା ଆଦୌ ଖରାପ ଲାଗେନାହିଁ ବରଂ ଭାରି ମଜା ଲାଗେ । ତାଙ୍କ ଲେଖା ପଢ଼ିବାକୁ ଭାରି ଭଲ ଲାଗେ । ସେହି ଘଟଣା ପରଠାରୁ ଚିତ୍ତଭାଇ ମୋ ଭିତରେ ଗୋଟିଏ ଭାରି ଉଚ୍ଚ ସ୍ଥାନରେ ଅଛନ୍ତି ଏବଂ ଆଗକୁ ସିଏ ସେହି ସ୍ଥାନରେ ରହିଥିବେ ।

*ସୁରେଶ ଚନ୍ଦ୍ର ନାୟକ*

*ଏଫ୍/୨୨୪, ସେକ୍ଟର-୧, ରାଉରକେଲା*

# ଆମ ପ୍ରିୟ ଚିତ୍ତଭାଇ

ସେ ସବୁଠି ବାରି ହୋଇପଡ଼ନ୍ତି । କାରଣ ତାଙ୍କର ସମସ୍ତଙ୍କ ସହ ଡୋର ଲାଗିଥାଏ । ସାଧାସିଧା ମଣିଷ, ଯାହା ଦେଖନ୍ତି ରୋକଠୋକ୍ ଭାବେ କହି ପାରନ୍ତି । ପ୍ରକୃତ ବନ୍ଧୁର ଯାହା କାମ ସେ ତାହାହିଁ କରିଥାନ୍ତି । ତାଙ୍କ ସହ କଥା ହେଲା ବେଳେ ଭୟ ନ ଥାଏ, ଭକ୍ତି ଥାଏ । ସେ ଆପଣାର ବନ୍ଧୁପରି ଲାଗନ୍ତି । ପ୍ରତ୍ୟେକ ମଣିଷଙ୍କୁ ସମ୍ମାନ ଦେଇଥାନ୍ତି । ସେ କହନ୍ତି ପ୍ରଥମେ ଆମର ପରିଚୟ ହେଲା ଆମେ ଆଗେ ମଣିଷ ତା' ପରେ କେଉଁ ଦେଶର ବା ଧର୍ମର । କିନ୍ତୁ ଆମ ସମାଜରେ ଆଜି ପର୍ଯ୍ୟନ୍ତ ସବୁ ମଣିଷ ସମାନ ଭାବରେ ବଞ୍ଚିବାର ଅଧିକାର, କଥା କହିବାର ଅଧିକାର ଏବଂ ପାଠ ପଢ଼ିବାର ଅଧିକାର ପାଇ ନାହାନ୍ତି ବୋଲି ଦଳେ ମଣିଷ ସବୁବେଳେ ଉପରେ ରହି ନିର୍ଦ୍ଦେଶ ଦେଉଛନ୍ତି । ଆଉ ଥୋକେ ମଣିଷ ଏସବୁକୁ ଦାସ ଭାବେ ଗ୍ରହଣ କରି ନେଉଛନ୍ତି । ଦଳେ ଶୋଷଣ କରି ନିଜ ପେଟକୁ ବଡ଼ କରୁଛନ୍ତି । ଅନ୍ୟ ଦଳେ ଦେଖୁଛନ୍ତି କିନ୍ତୁ ପ୍ରତିବାଦ କରୁନାହାନ୍ତି । ସହି ଯାଉଛନ୍ତି । ତେଣୁ ସେ ଅନେକ ସମୟରେ କହିଛନ୍ତି ବଡ଼ମାନେ ସବୁ ଇଚ୍ଛାକୁ ସାନମାନଙ୍କ ଉପରେ ଲଦି ଦେଉଥିବାରୁ ଆମର ପିଲାମାନେ ଯାହା ହେବାର କଥା ହୋଇପାରୁ ନାହାନ୍ତି ।

ତାଙ୍କର ସମଗ୍ର ଜୀବନ ସାଧନାରତ । ପ୍ରତ୍ୟେକ ସମୟକୁ ସଦୁପଯୋଗ କରନ୍ତି । ଛୋଟବେଳୁ ଆଜି ପର୍ଯ୍ୟନ୍ତ ଅଧ୍ୟୟନ କରିବା, ଲେଖିବା ଟିକ୍ ନିଖ୍ କରି ବ୍ୟାଖ୍ୟା କରିବା, ତାକୁ ଗବେଷଣା କରିବା ଚାଲୁ ରଖିଛନ୍ତି । ପାଠ ପଢ଼ା ସମୟରୁ ଦେଶର ସ୍ୱାଧୀନତା ଓ ମଣିଷର ଅଧିକାର ପାଇଁ ସଂଗ୍ରାମ ଚଳାଇ ଆସିଛନ୍ତି । ଯୁବକ ଅବସ୍ଥାରେ ଅକ୍ଳାନ୍ତ ପରିଶ୍ରମ କରି ମଣିଷର ଜୀବନକୁ ତନ୍ନ ତନ୍ନ କରି ପଢ଼ିଛନ୍ତି, ଛୋଟଠାରୁ ବଡ଼ଯାଏ ସମସ୍ତଙ୍କୁ ବୁଝିଛନ୍ତି । ଯୁବକମାନଙ୍କୁ ସର୍ବଦା ଆଗୁଆ ହୋଇ ବାହାରିବା ପାଇଁ ଆହ୍ୱାନ କରିଛନ୍ତି । ନିଜକୁ ବିଶ୍ୱର ଜଣେ ସୁଯୋଗ୍ୟ ସନ୍ତାନ ଭାବେ ଗଢ଼ି ତୋଳିଛନ୍ତି । ସେ ସମାଜର ପରିବର୍ତ୍ତନ କଥା

ଚିନ୍ତା କରିଛନ୍ତି । ତାଙ୍କର ସ୍ୱପ୍ନ : ମଣିଷ ମଣିଷ ମଧ୍ୟରେ ପରସ୍ପର ଶ୍ରଦ୍ଧା ଓ ସହଯୋଗ ରହିବ, ପରସ୍ପରର ଆବଶ୍ୟକତା ସମସ୍ତେ ଅନୁଭବ କରିବେ, ଜଣେ ଜଣଙ୍କର ସାଙ୍ଗ ହୋଇ ସୁଖ ଓ ଦୁଃଖରେ ଭାଗ ନେଇ ପାରିବ । କେହି ନିଜର ଦୁଃଖକୁ ଅନ୍ୟମାନଙ୍କ ଦୁଃଖଠାରୁ ବଡ଼ ବୋଲି ଦେଖାଇ ହେବେ ନାହିଁ, ନିଜର ଦୁଃଖକୁ ବରଂ ବିଶ୍ୱ ଦୁଃଖର ଅଂଶବୋଲି ଅନୁଭବ କରିବେ । ଜଣେ ଅନ୍ୟ ଜଣକୁ ବିଶ୍ୱାସ କରିବା ସହ ଭଲ ପାଇବ । କେହି କାହାର ମୁନିବ ବା ମାଲିକ ନ ହୋଇ ପରସ୍ପରକୁ ସମ୍ମାନ ଦେବେ ।

ଆମେ ତାଙ୍କୁ ଏକା ସାଙ୍ଗରେ ଗୋଟିଏ ପରିବାରରେ, ବିଦ୍ୟାଳୟ ଓ କଲେଜର ପିଲାମାନଙ୍କ ପାଖରେ, ସାହିତ୍ୟ ଓ ଆଧ୍ୟାତ୍ମିକ ଆଲୋଚନାରେ, ବିଭିନ୍ନ ସମ୍ମିଳନୀରେ, ଏବଂ ଆଦିବାସୀ ଭାଇଭଉଣୀମାନଙ୍କ ମେଳରେ ବିଭିନ୍ନ କର୍ମଶାଳାରେ ପୁଣି କେତେବେଳେ ଅଗ୍ରଗାମୀ ସଂଗଠନରେ ତ ପୁଣି କେତେବେଳେ ସୁହୃଦ୍ ଭାଇଙ୍କ ମେଳରେ ଦେଖିବାକୁ ପାଉ । ତାଙ୍କର ଲେଖା ଆମକୁ ଅଧିକ ଗଭୀରତର ସ୍ଥାନ ଆଡ଼କୁ ନେଇଯାଏ, ପ୍ରସାରିତ କରିଦିଏ, ଆଖିକୁ ବଡ଼ କରିଦିଏ । ସେଇ ଲେଖାମାନଙ୍କରେ ମଣିଷମାନଙ୍କୁ ଓ ସମାଜକୁ ପଢ଼ିହୁଏ, ଅନୁଭବ କରିହୁଏ । ଶ୍ରୀ ଅରବିନ୍ଦଙ୍କ ଲେଖାଗୁଡ଼ିକ ସେ ନିଜର ଅନୁଭୂତି ଓ ଉଦାହରଣ ମାଧ୍ୟମରେ ଆଲୋଚନା କରିଥାନ୍ତି । ଏହା ଆମ ହୃଦୟକୁ ଛୁଇଁଯାଏ । ଏହିପରି ଏକ ଆଲୋଚନା ଚକ୍ରରେ ଯୋଗସମନ୍ୱୟ ବହିଟି ପଢ଼ା ଚାଲିଥାଏ, ଚିରଭାଇଙ୍କ ସହ ସାକ୍ଷାତ୍ ହେଲା । ସେଦିନ କ୍ଲାସରେ କଥାଗୁଡ଼ାକ ମୋ ଆଡ଼କୁ ଯାଉଥାଏ । ମୋର ଭାବନା ସହ, ମୋର ଭିତରର ଇଚ୍ଛା ସହ ମିଶି ଯାଉଥାଏ । ଏପରି ମହାନ୍ ତତ୍ତ୍ୱକୁ ସରଳଭାବେ, ତଳୁ ଯେପରି ସମସ୍ତେ ବୁଝି ପାରିବେ ସେପରି ଆଲୋଚନା ହେଉଥିଲା । ଜୀବନ ଓ ଯୋଗ ମଧ୍ୟରେ କିଛି ପାର୍ଥକ୍ୟ ଜଣାପଡୁନଥିଲା, ମୋ ଭିତରେ ପୁରୁଣା ଗ୍ରନ୍ଥିଗୁଡ଼ାକ ଛିଣ୍ଡି ପଡୁଥିଲା । ପୂର୍ବରୁ କଲେଜରେ ''ବିଦ୍ୟା ଓ ବିଦ୍ୟାର୍ଥୀ'' ବିଷୟଟି ପଢ଼ା ହେଲା ବେଳେ ଜାଣିଥିଲି- ଚିରଭାଇ ଭୁବନେଶ୍ୱରରେ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ Director ଅଛନ୍ତି । ଭାବୁଥିଲି ଶ୍ରୀମା ଶ୍ରୀଅରବିନ୍ଦଙ୍କର ବଡ଼ ଭକ୍ତ ହୋଇଥିବେ ଓ ତାଙ୍କ ବିଷୟରେ ବହୁତ କଥା ଜାଣିଥିବେ । ଯା ଭିତରେ କିଛିଦିନ ବିତିଯାଇଛି । ଥରେ ବରେନ୍ଦ୍ରଭାଇଙ୍କ ସହ ବାଙ୍କୀ ପାଠଚକ୍ରରେ ମୋର ଦେଖାହୁଏ ଓ ସେ ଶ୍ରମ ଶିବିର କଥା କହନ୍ତି । ମୋର ମନେ ପଡୁଛି ସେ ଆମକୁ 'ଦେବ ମୁହୂର୍ତ୍ତ' ବହିଟି ପଢ଼ିବା ପାଇଁ ଦେଇଥିଲେ । ସେହି ବହିରେ ଥିବା ଲେଖାମାନ ଚିରଭାଇଙ୍କ ଆଡ଼କୁ

ମୋତେ ଆକର୍ଷିତ କରିଥିଲା ।

ସେଦିନ ଆଲୋଚନା ଚକ୍ରରେ ଚିତ୍ତଭାଇଙ୍କୁ ପ୍ରଥମେ ଦେଖି ବହୁତ ଖୁସି ହୋଇଯାଇଥିଲି ଏବଂ ଆସ୍ତେ ଆସ୍ତେ ଆହୁରି ନିଜର ହୋଇ ଯାଇଥିଲି । ଏହି କ୍ଲାସରେ ପ୍ରତି ଗୁରୁବାର 'ଯୋଗ ସମନ୍ୱୟ' ଓ ରବିବାର ଦିନ 'ଦିବ୍ୟ ଜୀବନ' ଗ୍ରନ୍ଥ ପଢ଼ା ହେଉଥିଲା । ଆମ ଜୀବନ ସହ ସମ୍ପର୍କ ଥିବା ପ୍ରତ୍ୟେକ ଘଟଣା ଆଲୋଚନାର ପରିସରକୁ ଆସୁଥିଲା । ସେଥିରୁ ଏହି ପ୍ରେରଣା ମିଳୁଥିଲା ଯେ ନିଜେ ଯୋଗ୍ୟ ହେଲେ, ପ୍ରସ୍ତୁତ ହେଲେ ସମାଜ ପାଇଁ କିଛି କରିହେବ । ସେଠାରୁ ନିଜକୁ ପ୍ରସ୍ତୁତ କରିବା ଆରମ୍ଭ କଲି । ଏହାପରେ ଚିତ୍ତଭାଇଙ୍କ ଠାରୁ "ବିଶ୍ୱକୁ ଗବାକ୍ଷ" "ଶୁକର ଓ ସକ୍ରେଟିସ୍" ଆଦି ବହି ପଢ଼ିବାର ସୁଯୋଗ ପାଇଲି । ରୋହିତର ଡାଏରୀରେ ଏତେ ସବୁ ଶ୍ରଦ୍ଧାପୂର୍ଣ୍ଣ କଥା ଅଛି ତାହା ମୋତେ ନୂଆ ପ୍ରେରଣା ଦେଲା । ମୋ ଭିତରେ ଲେଖିବାର ଓ ପଢ଼ିବାର ଆଗ୍ରହ ଆସିଲା । ତେଣୁ ମୋର ଲେଖିବାର ଶୈଳୀ ଓ ପଢ଼ିବାର ଧାରା ବଦଳିଗଲା । ତାଙ୍କଠାରୁ ଏ ଦିଗରେ ସାହସ ବି ପାଇଲି ।

ସେ ପ୍ରତ୍ୟେକ ସମୟକୁ ଠିକ୍ ଭାବେ ବିନିଯୋଗ କରନ୍ତି, ତାଙ୍କ ପାଇଁ ସବୁ ସମୟ ମୂଲ୍ୟବାନ । କେଉଁ କାର୍ଯ୍ୟକୁ ଅବହେଳା କରନ୍ତି ନାହିଁ । ସବୁ କାର୍ଯ୍ୟକୁ ସମ୍ମାନ ଓ ଶ୍ରଦ୍ଧାର ସହ କରିଥାନ୍ତି । ଆମ ପାଇଁ ଗୋଟିଏ କାର୍ଯ୍ୟ ଅଧିକ ଗୁରୁତ୍ୱ ଓ କମ୍ ଗୁରୁତ୍ୱ ହୋଇଥିବାରୁ ଏବଂ ଜଣେ କାହାର ଚାପରେ ବାଧ ହୋଇ କରୁଥିବାରୁ ତାହା ବହୁତ ଆଡ଼ମ୍ବର ସହକାରେ ଅଥବା ବଡ଼ ବ୍ୟସ୍ତତା ଭିତରେ କରୁ । କିନ୍ତୁ ସେ ତାଙ୍କ କାର୍ଯ୍ୟରେ ଏତେ ଆଡ଼ମ୍ବର ପୂର୍ଣ୍ଣ ହୁଅନ୍ତି ନାହିଁ । ସେ ସର୍ବଦା ସବୁ କାର୍ଯ୍ୟକୁ ସମାନ ଭାବେ କରନ୍ତି । ସଚେତନ ଓ ସକ୍ରିୟ ଭାବେ କରନ୍ତି । ଏପରିକି କୌଣସି ବ୍ୟକ୍ତି ସହ କଥା ହେଲା ବେଳେ ମଧ ତାକୁ ଗୁରୁତ୍ୱ ଦେଇଥାନ୍ତି । ଅନେକ ସମୟ ଲେଖାଲେଖି ଓ ଅଧ୍ୟୟନ କରିବା ସହ ରୋଷେଇ କରିବା, ବଗିଚା କାମ କରିବା, ବଜାର ସଉଦା କରିବା ଆଦି ସବୁ କାମ ସମାନ ଶ୍ରଦ୍ଧାର ସହ କରିଥାନ୍ତି । ଏହା ବ୍ୟତୀତ ଶିକ୍ଷକ ଓ ପିଲାମାନଙ୍କ ସହ ବ୍ୟକ୍ତିଗତ ସମ୍ପର୍କ ଓ ଚିଠିପତ୍ର ଲେଖିବା ଓ ଉତ୍ତର ଦେବା ମଧ ହୋଇଥାଏ । ସମସ୍ତଙ୍କ ସହ ତାଙ୍କର ଡୋର ଲାଗିଥାଏ । ଯେତେବେଳେ ଜଣେ ବ୍ୟକ୍ତି ନିଜ ପାଇଁ ନୁହେଁ ଅନ୍ୟମାନଙ୍କ ପାଇଁ ବଞ୍ଚେ ଓ ମହାନ୍ ଉଦ୍ଦେଶ୍ୟ ନେଇ କାମ କରେ ସେତେବେଳେ ସେ ସମସ୍ତଙ୍କର ବନ୍ଧୁ ଓ ବିଶ୍ୱର ଜଣେ ସୁଯୋଗ୍ୟ ସନ୍ତାନ ହୋଇଯାଏ ।

ଥରେ ଚିତ୍ତ ଭାଇଙ୍କ ପାଖକୁ ଜଣେ ଭାଇ ଚିଠି ଦେଇଥିଲେ ।

ସେତେବେଳେ ମୁଁ ଚିତ୍ତଭାଇଙ୍କ ଘରେ ଥାଏ । ଚିଠିଟି ପଢ଼ିବା ପାଇଁ ଆଗ୍ରହ ହେଲା ପଢ଼ି ଦେଲି । ସନ୍ଧ୍ୟାରେ ଚିତ୍ତଭାଇ ଆସିଲେ ଚିଠିଟି ପଢ଼ିଛି ବୋଲି କହିଲି । ସେ କହିଲେ, ''ଏ ତ ଆମ ଘର କଥା । ଘରକୁ ଚିଠି ଆସିଲେ ସମସ୍ତେ ପଢ଼ିପାରିବେ ।'' ମୁଁ ଅତି ଆପଣାର ମଣିଷ ପାଖରେ ଥାଇ ଭାବୁଥିଲି ଯଦି ଚିତ୍ତଭାଇ ରାଗୀ ମଣିଷଟିଏ ହୋଇଥାନ୍ତେ ତେବେ ମୋର ଅବସ୍ଥା କ'ଣ ନ ହୋଇଥାନ୍ତା !

ଆଲୋଚନାମାନଙ୍କରେ ସେ ଏମିତି ହସେଇ ଓ ମଜେଇ କଥା ହୁଅନ୍ତି, ଯେତେ ଅସୁବିଧା ଓ ଅଭାବ ଥିଲେ ବି ତାହା ଭୁଲି ହୋଇଯାଏ । ତାଙ୍କ ପାଖରୁ ଆଲୋଚନା ବା କଥାବାର୍ତ୍ତା ହୋଇ ଫେରିଲା ବେଳକୁ ନୂଆ ଜୀବନ ଓ ଆଶା ନେଇ ଆମେ ଫେରୁ । ସେତେବେଳେ କାମ କରିବାର ପ୍ରେରଣା ଶତଗୁଣ ବଢ଼ିଯାଏ । ନିଜ ଦୁଃଖ ଠାରୁ ଅନ୍ୟ ମଣିଷର ଆହୁରି କେତେ ବେଶୀ ଦୁଃଖ ଅଛି, ଅସୁବିଧା ଅଛି, ଅଭାବ ଅଛି ଜାଣିହୁଏ । ସେତେବେଳେ ନିଜର ଦୁଃଖ ଆଉ ଦୁଃଖ ପରି ଲାଗେ ନାହିଁ । ମୋ ପାଖରେ ଆହୁରି ଅନେକ ବନ୍ଧୁ ଅଛନ୍ତି, ସେମାନଙ୍କ ପାଇଁ ମୋତେ ଅଧିକ ପ୍ରସ୍ତୁତ ହେବାକୁ ହେବ । ଚିତ୍ତଭାଇ ଆମ ପାଇଁ ପ୍ରେରଣା ହୋଇ ରହିବେ ।

*ନାରାୟଣ ବେହେରା*

*ଅଗ୍ରଗାମୀ, ଦଶମନ୍ତପୁର, କୋରାପୁଟ*

# ଚିତ୍ତଭାଇଙ୍କୁ ମୁଁ ଯେପରି ଜାଣେ

ହେତୁ ହେବା ପରେ ପ୍ରଥମେ ଯେତେବେଳେ ଚିତ୍ତଭାଇଙ୍କୁ ଦେଖିଲି ସେତେବେଳେ ଚିତ୍ତଭାଇ ବିଷ୍ଣୁବିନ୍ଧା ଶ୍ରମଶିବିରକୁ ଆସିଥାନ୍ତି । ମୁଁ ତ ଭାଇଙ୍କୁ ଆଗରୁ ଦେଖିଥିବାର ମନେପକାଇ ପାରୁନଥିଲି ତେଣୁ ସେଠାରେ ପ୍ରଥମେ ଭେଟିଲି । ସିଧା ଯାଇ ପାଖରେ ବସିପଡ଼ିଲି । ଭାଇ ମୋତେ ଅନେକ କଥା ପଚାରିଲେ, କଥା ହେଲେ । ଶିବିରରେ ଭାଇଙ୍କୁ ଯେଉଁ ଖାଦ୍ୟ ଦିଆଯାଏ ପ୍ରାୟ ଖୁବ୍ କମ୍ ଖାଇ ପାଖରେ ବସିଥିବା ଅନ୍ୟମାନଙ୍କୁ ସେ ଖାଦ୍ୟରୁ ଭାଗ ଦିଅନ୍ତି । ଏଣୁ ମୁଁ ପାଖରେ ବସିଥାଏ । ମୋ ଭାଗରେ ମଧ ମିଳେ । କେତେ କେତେ ଖୁସିରେ ଆମେ ବସି ଖାଦ୍ୟ ଖାଉଥିଲୁ । ସେସବୁ ଏବେ ମନେପଡୁଛି । ଭାଇଙ୍କର

(ଚିତ୍ତଭାଇ) ଅନେକ ଅନେକ କାର୍ଯ୍ୟ ପଡ଼ିବାରୁ ଏବେ ସେ ପ୍ରାୟ ଆଉ ଶ୍ରମଶିବିର ଆସିପାରୁନାହାନ୍ତି ।

କିଛିବର୍ଷ ତଳେ ଶାନ୍ତବଣି ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ୫ ଦିନିଆ ସ୍ୱାଧ୍ୟାୟ ଶିବିର ହୋଇଥିଲା । ସେହି ସ୍ୱାଧ୍ୟାୟ ଶିବିରକୁ ଚିତ୍ତଭାଇ ଆସିଥାନ୍ତି । ମୁଁ ମଧ୍ୟ ସେହି ଶାନ୍ତବଣିରେ ଥାଏ । ଆମେ ସବୁ ଭାଇଙ୍କ ସହିତ ବହୁତ ମିଶୁଥାଉ । ଭାଇ ଆମ ସାଙ୍ଗରେ ହାଟ ବୁଲିବାକୁ ଯାଉଥିଲେ । ପୋଖରୀକୁ ଗାଧୋଇବାକୁ ଯାଉଥିଲେ । ମୋର ପ୍ରତ୍ୟେକ ଭୁଲ୍ ଧାରଣାଗୁଡ଼ିକୁ ଭାଇ କେତେ ସହୃଦୟତାର ସହ ଅଥଚ ନିଶ୍ଚିତ ଭାବରେ ଦେଖାଇ ଦେଉଥିଲେ, ବଦଳାଇବି ଦେଉଥିଲେ । ରାୟଗଡ଼ା ନବ ପଲ୍ଲବ ଶିବିରରେ ଭାଇଙ୍କ କଥା ଶୁଣିଲା ପରେ ମୋର ଆଦିବାସୀ ଭାଇଭଉଣୀଙ୍କ ପ୍ରତି ଥିବା ଦୃଷ୍ଟିକୋଣ ବଦଳିଯାଇଥିଲା ।

ଚିତ୍ତଭାଇଙ୍କୁ ମୁଁ ଗୁରୁଜନ ଭଳି ସମ୍ମାନ ଦେଉଥିଲେ ମଧ୍ୟ ତାଙ୍କୁ କେବେବି ଚିରାଚରିତ ଗୁରୁଜନର ସଂଜ୍ଞା ମଧ୍ୟଦେଇ ଦେଖିନାହିଁ । ତାଙ୍କ ପାଖରେ ଗୁରୁଜନ ଓ ଉପଦେଶର ସଂଜ୍ଞା ହିଁ ବଦଳିଯାଏ । ଅନ୍ୟ ଗୁରୁଜନଙ୍କ ସହ କଥା ହେଲାବେଳେ ମୁଁ ମୋଟେ ସରଳ ହୋଇପାରେନାହିଁ । ସେଠାରେ ଗୋଟିଏ ଛଳନାର ପ୍ରାଚୀର ଥାଏ । ଗୁରୁଜନମାନେ ମଧ୍ୟ ତାଙ୍କର ଗୁରୁଜନର ସଂଜ୍ଞା ଭିତରେ ଥାଇ କଥାବାର୍ତ୍ତା କରନ୍ତି । କିନ୍ତୁ ଚିତ୍ତଭାଇଙ୍କ ସହ କଥାବାର୍ତ୍ତା ସମୟରେ କିଛିବି ଲୁଚାଇ ହୁଏନି । ତେଣୁ ଚିତ୍ତଭାଇ ମୋ' ପାଇଁ ଗୁରୁଜନ ନୁହଁନ୍ତି । ତା'ଠାରୁ ଅଧିକ କିଛି ।

ଭାଇଙ୍କ ସହ ନବପଲ୍ଲବ ଶିବିର, ରାୟଗଡ଼ାରେ ପାଞ୍ଚଦିନ ରହିଥିଲି । ଶେଷଦିନ ଆମ ଭିତରୁ କେହି ଜଣେ କହିଲେ outingରେ ଯିବାବୋଲି । ଚିତ୍ତଭାଇ ଏକଥା ଶୁଣିଲେ । ସନ୍ଧ୍ୟାରେ ସଭାରେ ଏହି କଥାପଡ଼ିଲା । ଆମେ କ'ଣ ପାଇଁ ଏଠାକୁ ଆସିଛୁ ? ଲଜ୍ଜାରେ ମୁଣ୍ଡ ନଇଁଗଲା । ଆମେ ବର୍ତ୍ତମାନ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଅଛୁ । କେତେ ବଡ଼ ଗୁରୁ ଦାୟିତ୍ୱ ଅପେକ୍ଷା କରୁଛି । ସେଠାରେ ଏମିତି ଫୁଲାଫାଙ୍କିଆ outingର ସ୍ଥାନ ଅଛି ? କଥାଛଳରେ ଭାଇ ଦେଶ, ଦେଶର ଅବସ୍ଥା ଏବଂ ଆମ ପରି ଅନେକ ଅନେକ ପିଲାଙ୍କ ଜୀବନ ଉପରେ କେତେ କ'ଣ କହିଲେ । ସେଦିନ କେତେ ବଡ଼ ଝଟ୍କା ଲାଗିଥିଲା ।

ଭାଇଙ୍କର କଥାବାର୍ତ୍ତା କଠୋର ସତ, କିନ୍ତୁ ତାଙ୍କ ଭିତରେ ଥିବା ସ୍ନେହ, ଶ୍ରଦ୍ଧା, ପ୍ରେମ ଓ ଜ୍ଞାନ କିପରି ଜଳଜଳ ହୋଇ ଦିଶେ । ଆମେ ଏଠାକୁ କେବଳ ଖାଇପିଇ ସାଧାରଣ ଓ ମାମୁଲି ଜୀବନ ଚୀଇଁବାକୁ ଆସିନୁ । ଆମକୁ ମାମୁଲି ଜୀବନ, ସାଧାରଣ ଧର୍ମ (ହିନ୍ଦୁ, ମୁସ୍‌ଲିମ୍ ଇତ୍ୟାଦି) ଗୋଷ୍ଠୀବନ୍ଧନ ଆଦିରୁ

ଉପରକୁ ଉଠି ଏକ ସ୍ୱତନ୍ତ୍ର ଜୀବନ ଜୀଇଁବାକୁ ପଡ଼ିବ । ଆମେ କୌଣସି ଗୁମ୍ଫାରେ ପଡ଼ିବାନି । ଗୁମ୍ଫାରୁ ବାହାରିବା ।

ଭାଇଙ୍କର ଈଶ୍ୱର ବିଶ୍ୱାସ, ମାନବିକତା ଓ ମାନବର ସମତା ଉପରେ ଥିବା ଅଖଣ୍ଡ ବିଶ୍ୱାସ ଦେଖି ମୁଁ ମଧ ଭିତରେ ପରିବର୍ତ୍ତନର ଅନୁଭବ କରିଥିଲି । କିଛି ବର୍ଷ ପୂର୍ବେ ମୁଁ ଚିତ୍ତଭାଇଙ୍କର ଏକ ଚିତ୍ର କରି ଭାଇଙ୍କୁ ଦେଇଥିଲି । ଭାଇ ଚିଠି ଲେଖିଲେ – "ବାପୁ, ଚିତ୍ରକୁ କେତେବେଳେ ଦେଖିଲେ ତୁମ ପରି ଦିଶୁଛି ପୁଣି କେତେବେଳେ ମୋ'ପରି ।" ଭାଇଙ୍କ ପାଖରୁ ମୁଁ ସବୁବେଳେ କିଛି ଶୁଣି ଶିଖିବାକୁ ଚେଷ୍ଟାକରେ । ଭାଇଙ୍କ ପାଖରେ ମୁଁ ସବୁବେଳେ କୃତଜ୍ଞ ।

*ଚିନ୍ମୟ ବେହେରିଆ*
*ରାଜଧାନୀ ମହାବିଦ୍ୟାଳୟ, ଭୁବନେଶ୍ୱର*

# ଆପଣା ଲେଖା ଭିତରେ ଥିବା ମଣିଷଟି

ଆଜିକୁ ୫ ବର୍ଷ ତଳେ ଶିକ୍ଷାକ୍ଷେତ୍ରର ବହିଗୁଡ଼ିକୁ ପଢୁ ପଢୁ ଚିତ୍ତଭାଇଙ୍କର ଅସ୍ପଷ୍ଟ ଛବି ଦେଖିବାକୁ ପାଇଲି । ସେ ଅସ୍ପଷ୍ଟରୁ ଧୀରେ ଧୀରେ ଏପର୍ଯ୍ୟନ୍ତ ସ୍ପଷ୍ଟ ହୋଇଚାଲିଛନ୍ତି । ମୋର ଚେଷ୍ଟା ଏତେ ବେଶୀ କ୍ଷିପ୍ର ନୁହେଁ, ଯାହାଦ୍ୱାରା କି ମୁଁ ତାଙ୍କୁ ଏତେ ଶୀଘ୍ର ସ୍ପଷ୍ଟ କରିପାରିବି । ମାତ୍ର ମୋର ଚେଷ୍ଟା ବଳବତ୍ତର ରହିବ ।

ଯେଉଁଦିନୁ ମୁଁ ଏଇ ସଂସାରକୁ ଆସିଲିଣି ଚିତ୍ତଭାଇଙ୍କୁ ଛାଡ଼ି କରି ଆସି ନ ଥିଲି । ମୋ ଭିତରେ ଚିତ୍ତଭାଇ ଅଦୃଶ୍ୟ ଭାବରେ ମୋତେ ପ୍ରରୋଚନା ଦେଉଥିଲେ । ସେଥିପାଇଁ ମୁଁ କେବେ ଭାଙ୍ଗି ପଡ଼ି ନ ଥିଲି । ତାଙ୍କ ସାଥିରେ ମୋର ପରିଚୟ ନ ଥିଲେ ବି ମୋର ଅନୁଭବ ହୁଏ ମୋ ଭିତରେ ଏମିତି ଅନେକ ଅଛନ୍ତି ଯେଉଁମାନେ କି ମୋର ଜୀବନ ରାସ୍ତାଟି ଦେଖେଇ ଦେବେ ଏବଂ ମୋର ହାତଧରି ନିଶ୍ଚୟ ଚଳେଇ ନେବେ ।

ଅନେକ ସମୟରେ ମୋତେ ଲାଗେ– ଏହା ମୋର ଭାବପ୍ରବଣତା ହୋଇପାରେ– ସତେ ଯେପରି ଚିତ୍ତଭାଇ ମୋ ଦେହ ଓ ମନ ମଧ୍ୟରେ ଅବସ୍ଥାନ କରିଛନ୍ତି ଏବଂ ମୁଁ ଚାଲିଲା ବେଳେ ଓ ଭାବିଲା ବେଳେ ଚିତ୍ତଭାଇଙ୍କୁ ସାଥିରେ ଧରି ଚାଲୁଛି ଏବଂ ମୁଁ ତାଙ୍କ ଭାବନା ସହିତ ଏକାତ୍ମ ହୋଇ ଭାବୁଛି । ମୋଠାରୁ

ମୁଁ ତାଙ୍କୁ ଅଲଗା ଭାବରେ ଅନୁଭବ କରିପାରୁ ନାହିଁ ।

ତାଙ୍କ ଜୀବନ ଏକ ଉତ୍ସର୍ଗୀକୃତ ଜୀବନ ଏବଂ ସେ କେଉଁଠାରେ ଅଟକି ରହିଯିବାର ମୁଁ ଦେଖୁନାହିଁ । ଈଶ୍ୱରଙ୍କୁ ଯେପରି ଆମେ କେଉଁଠି କେବଳ ଗୋଟିଏ ଜାଗାରେ ଆବିଷ୍କାର କରିବାର ଦୁର୍ବୁଦ୍ଧି କରିବା ନାହିଁ, ଠିକ୍ ସେପରି ଚିତ୍ତଭାଇ କୌଣସି ନିର୍ଦ୍ଦିଷ୍ଟ  ଜାଗାରେ ବସାବାନ୍ଧିଥିବା କଥାକୁ ମୁଁ ସ୍ୱୀକାର କରିପାରୁନାହିଁ । ଯିଏ ତାଙ୍କୁ ଓ ତାଙ୍କର ଲେଖାକୁ ଶ୍ରଦ୍ଧା କରେ ସେ ତା'ରି ମନରେ ହିଁ ଆସ୍ଥାନ ଜମାଇ ରହିଥାନ୍ତି । ସମସ୍ତ ମହାନ୍ ସାହିତ୍ୟ ସାଧକଙ୍କ କ୍ଷେତ୍ରରେ ଏହାହିଁ ହୋଇଥାଏ ।

ଚିତ୍ତଭାଇଙ୍କୁ ମନେ ପକେଇଲା ବେଳେ, ମୋର ଦୃଷ୍ଟି ମୋ ନିଜ ପାଖକୁ ଫେରିଆସେ । ଏହାକୁ ମୋର ସୌଭାଗ୍ୟ ବୋଲି ଭାବିଛି । କାରଣ ଏହା ଦ୍ୱାରା ମଣିଷ ଉପକୃତ ହେବାର ସମ୍ଭାବନା ଅଧିକ । ଏମିତି ଏକ ସମ୍ଭାବନାମୟ ରାସ୍ତାରେ ଗତି କରିବାକୁ ମୁଁ ପିଲାଟି ଦିନୁ ଚାହିଁ ବସିଥିଲି । ସଫଳ ହେଲି । ଭଗବାନଙ୍କୁ ଜାଣିବାକୁ ଅନେକ ଅନୁଷ୍ଠାନ ଯାଇଥିଲି । ମାତ୍ର ଭଗବାନଙ୍କୁ ସ୍ମରଣ କରିବା ଅବସରରେ କେବଳ ଅନୁଷ୍ଠାନଗୁଡ଼ାକ ହିଁ ନଜର ପଡ଼ିଥାନ୍ତି ଏବଂ ଭଗବାନ ପାଶୋର ହୋଇଯାନ୍ତି । ଆଜି ସେ କଥା ନାହିଁ । ମୋ ଜୀବନ ପରିସରରେ ଯଦି ଭଗବାନ ମିଳିବେ ନାହିଁ, ତେବେ ମୁଁ ତ ଅଛି, ନିଜ ପାଖରେ ନିଜେ ମିଳିଯିବାଟା କ'ଣ କମ୍ ସୌଭାଗ୍ୟର କଥା !

ଚିତ୍ତଭାଇଙ୍କ ବିଷୟରେ କହିବାକୁ ଗଲେ ମୁଁ କେବଳ କହିବି ଯେ ସେ ସମସ୍ତଙ୍କ ଭିତରେ ରହିଯାଇ ପାରନ୍ତି ଏବଂ ଯଦି ସେ କେଉଁଠି ଅଟକି ଯାଉଥାନ୍ତେ ତେବେ ସେ ସମସ୍ତଙ୍କ ଭିତରେ ରହି ପାରିନଥାନ୍ତେ । ଏହାହିଁ ହେଉଛି ମୋର ବିଶ୍ୱାସ । ଏହା ଛଡ଼ା ତାଙ୍କର ପାରଙ୍ଗମତା ବିଷୟରେ ମୁଁ ଆଉ କିଛି କହିବାକୁ ସାହସ କରି ପାରିବି ନାହିଁ ।

ତାଙ୍କ ବହି ଯାହା ପାଇଛି ପଢ଼ିଛି । ସେଇ ଲେଖାମାନଙ୍କ ମଧ୍ୟରୁ କେଉଁଟି ମୋ ହୃଦୟକୁ ଅଧିକ ବା କମ୍ ଆଲୋଡ଼ିତ କରିଛି ବୋଲି କହିପାରିବି ନାହିଁ । କାରଣ ତାଙ୍କ ଲେଖାରେ ସେ ନିଜେ ଉପସ୍ଥିତ ଥାଆନ୍ତି ଏବଂ ତାଙ୍କଠାରୁ ତାଙ୍କ ଲେଖାଗୁଡ଼ିକର ଦୂରତ୍ୱ ରହିଛି ବୋଲି ମୁଁ ସ୍ୱୀକାର କରିପାରୁନାହିଁ । ଲେଖା ଭିତରେ ମୋତେ ଜଳ ଜଳ କରି ଦିଶିଯାଉଛି ସେହି ମଣିଷଟି । ତାଙ୍କ ଲେଖା ଭଳିଆ ଲେଖାଟିଏ ଲେଖିଦେବାକୁ କେତେଥର ସାହସ କରିଛି, ମାତ୍ର ତାଙ୍କର ସାହିତ୍ୟଜ୍ଞାନ ଓ ଶବ୍ଦ ସଂଯୋଜନା ପାଖରେ ମୁଁ ହାର ମାନିଛି । ଲେଖାଟିଏ ନ ଲେଖି ପାରିଲେ

ମଧ୍ୟ ମୁଁ ନିଜକୁ ଦୁର୍ବଳ ମନେ କରୁନାହିଁ, କାରଣ ଚିତ୍ତଭାଇ ମୋ ଭିତରେ ବି ଅଛନ୍ତି ଏବଂ ତାଙ୍କ ଲେଖାଗୁଡ଼ିକ ମୋର ଏକାନ୍ତ ନିଜର ।

ଚିତ୍ତଭାଇଙ୍କ ସ୍ଥୂଳ ସାନ୍ନିଧରେ ମୁଁ ଏତେ ବେଶୀ ଆସିନାହିଁ । ମୁଁ ତାଙ୍କୁ ଥରେ ମାତ୍ର ୧ଘଣ୍ଟା ପାଇଁ ଦେଖି ଅଛି । ଆମ ଭିତରେ କେତେଖଣ୍ଡ ଚିଠି ପତ୍ର ଆଦାନ ପ୍ରଦାନ ହୋଇଛି । ହେଲେ କୌଣସି ବିଶେଷ ସଂପର୍କ ସ୍ଥାପିତ ହୋଇନାହିଁ ।

ଚିତ୍ତଭାଇ ଆମ ରାଜ୍ୟରେ, ଆମ ପାଖରେ ଅତି ନିକଟରେ ରହିଥିଲେବି ତାଙ୍କୁ ଦେଖିଯିବାକୁ କିମ୍ବା ସୌଜନ୍ୟମୂଳକ ଆଲୋଚନା କରିବାର ଆବଶ୍ୟକତା ଅନୁଭବ କରିନାହିଁ । କାରଣ ତାଙ୍କର ପ୍ରତିଟି ଲେଖାରେ ସେ ଏତେ ପ୍ରତ୍ୟକ୍ଷ ଭାବରେ ଉପସ୍ଥିତ ରହିଥାନ୍ତି ଯେ ମୋତେ ଲାଗେ ଖୁବ୍ ପାଖରେ ହିଁ ଅଛନ୍ତି ।

ଆଜି ଚିତ୍ତଭାଇଙ୍କ ବିଷୟରେ ଯାହା କହିଲି ଯା ଅପେକ୍ଷା ଆହୁରି ଅଧିକ ମୁଁ କହି ପାରିବି । ତାଙ୍କ ବିଷୟରେ ଯେତିକି ଅନୁଭବ କରିଛି ଏ କ୍ଷୁଦ୍ର ଲେଖାଟି ଭିତରେ ତାହା କହିପାରି ନାହିଁ । ଭବିଷ୍ୟତରେ ମୁଁ ନିଶ୍ଚୟ ଅଧିକ କହିପାରିବି ବୋଲି ଆଶା ରଖିଛି ।

*ବନମାଳୀ ଭାଇ*
*କାମାକ୍ଷାନଗର*

# ମୋର ଅସଲ ଶିକ୍ଷକ

**ସେ**ତେବେଳେ ଏ ସଂସାର ମୋତେ ନୂଆ ନୂଆ ଲାଗୁଥାଏ । ସଂସାର ଭିତରେ ମୁଁ ଯେପରି ଜଣେ ଅନାବଶ୍ୟକ ବାଳକ; ଏହିପରି ହାଡ଼େ ହାଡ଼େ ବୋଧ ହେଉଥାଏ । ତେର କି ଚଉଦ ବର୍ଷ ବୟସର କଥା । ଗାଁ ଛାଡ଼ି ଦୂରରେ ରହି ପାଠ ପଢୁଥିଲି ସୋର ନିକଟବର୍ତ୍ତୀ ମାତୃସାଧନା କେନ୍ଦ୍ରରେ । ଗାଁଠାରୁ ପ୍ରାୟ ପଚାଶ କିଲୋମିଟର ଦୂର ହେବ । ସେଠାକାର ଶିକ୍ଷକମାନେ ମୋ ନିଜର ଭାଇଭଉଣୀ ପରି । ସେମାନଙ୍କ ସ୍ନେହଶ୍ରଦ୍ଧାରେ ବାନ୍ଧି ହୋଇଯାଇ ଏକ ପ୍ରକାର ନିଶ୍ଚିନ୍ତ ଜୀବନ ବିତାଉଥିଲି । ଏ ସଂସାରରେ ଦୈନନ୍ଦିନ କ'ଣ ସବୁ ଘଟି ଯାଉଛି ସେଥିପ୍ରତି କୌଣସି ନିଘା ନ ଥିଲା । ଏପରିକି ସେହି ବିଦ୍ୟାଳୟରେ ମୋ ଚାରିପାଖରେ କ'ଣ ସବୁ ଘଟି ଯାଉଥିଲା ଜାଣିବାକୁ ମୋର ଆଗ୍ରହଟିଏ ବି ହେଉ ନ ଥିଲା । ନିଜ ଶରୀର ପ୍ରତି ଯତ୍ନ ନେବାର କୌଣସି କୌଶଳ ମଧ୍ୟ ସେ ପର୍ଯ୍ୟନ୍ତ ଅକ୍ତିଆର କରି ପାରିନଥିଲି । ଫଳରେ ବିଭିନ୍ନ ସମୟରେ ବିଭିନ୍ନ ରୋଗଦ୍ୱାରା ମଧ୍ୟ ଆକ୍ରାନ୍ତ ହୋଇ ପଡୁଥିଲି । ମୋ

ଅବସ୍ଥାର ଏହିପରି ଏକ ପାହାଚରେ ଚିତ୍ତଭାଇଙ୍କ ସହିତ ପ୍ରଥମ ପରିଚୟ ହୋଇଥିଲା । ପହିଲି ଦେଖାରେ ସେପରି କିଛି ବିଶେଷତ୍ୱ ମୁଁ ଅନୁଭବ କରି ନ ଥିଲି । କେବଳ ଏତକ ଜାଣିଥିଲି ସେ ସମସ୍ତଙ୍କର ପ୍ରିୟ । ସମସ୍ତଙ୍କ ମୁହଁରେ ତାଙ୍କର ଚର୍ଚ୍ଚା- କାହାର ନିନ୍ଦା ମାଧ୍ୟମରେ କିମ୍ବା କାହାର ପ୍ରଶଂସା ମାଧ୍ୟମରେ । ଆମ ବିଦ୍ୟାଳୟରେ ହେଉଥିବା ସୁହୃଦ୍ ଶ୍ରମ ଶିବିରରେ ଯୋଗ ଦେବା ପାଇଁ ସେ ଆସିଥିଲେ । ସେ ଆମ୍ଭମାନଙ୍କର କ୍ଲାସ୍ ନେବା ପାଇଁ ଇଚ୍ଛା କଲେ । ବିଦ୍ୟାଳୟରେ ପଢ଼ାଉଥିବା ବେଳେ ଖୁବ୍ କମ୍ ସମୟ ମଧ୍ୟରେ ଆମର ସେ ଅଧିକ ପ୍ରିୟ ହୋଇଉଠିଲେ । ଆମ ଶ୍ରେଣୀରେ ଆମେ ବାରଜଣ ପିଲା ଥିଲୁ । ଚିତ୍ତଭାଇ ଆମ୍ଭମାନଙ୍କୁ ଏମିତି ଭାବରେ ମୁକ୍ତ କରିଦେଲେ ଯେ ଆମେ ସବୁ ଅନ୍ତର ଭିତରେ ଆଉ ବୁଜି ହୋଇ ରହି ପାରିଲୁ ନାହିଁ । ତାଙ୍କ ନିକଟରେ ଆମେ ସମ୍ପୂର୍ଣ୍ଣ ଖୋଲିଗଲୁ ।

ଏପରିକି ମାତୃସାଧନା କେନ୍ଦ୍ରରେ ଶିକ୍ଷକମାନେ ଆମମାନଙ୍କ ଏପରି ମୁକ୍ତ ଢଙ୍ଗଟିକୁ ଭୟ କଲେ । ଭିତରେ ପ୍ରଗତିର ଏକ ସାହସ ନ ଥିଲେ ଏପରି ଭୟଟିଏ ଗଜୁରି ଉଠେ । ଭୟର ଏକ ପ୍ରକୋପ ମଧ୍ୟ ଥାଏ । ତାହାର ପ୍ରକାଶ୍ୟ ରୂପଟି ହେଉଛି ଦମନ ଲୀଳା । ଶିକ୍ଷକ ଭାଇମାନେ ଆମକୁ ଚିତ୍ତଭାଇଙ୍କ ସହିତ ଅଧିକ ମିଶିବା ପାଇଁ ବାରଣ କଲେ । କେମିତି କେଜାଣି ଏକଥାଟି ସେତେବେଳେ ଚିତ୍ତଭାଇଙ୍କ କାନରେ ମଧ୍ୟ ପଡ଼ିଥିଲା । ମୁଁ ବୁଝି ପାରୁଛି, ସେ ଦିନ ତାଙ୍କୁ କେତେ ଦୁଃଖ ଲାଗି ନ ଥିବ ।

ସମୟକ୍ରମେ ମହାବିଦ୍ୟାଳୟର ଜୀବନ ଆସି ପହଞ୍ଚିଲା । ମାତୃସାଧନା କେନ୍ଦ୍ରକୁ ପଛରେ ଛାଡ଼ି ଆସିବାକୁ ହେଲା । କିନ୍ତୁ ସେଠାରେ ଯାହାସବୁ ପାଇଲି ସେଗୁଡ଼ିକ ମୋ ଭିତରେ ସତେକି ଏକ ପେଟରା ଭିତରେ ସାଇତି ହୋଇ ରହିଗଲା । ସେଠା ଶିକ୍ଷକମାନଙ୍କର ସ୍ନେହ ଶ୍ରଦ୍ଧା ମୋ ଜୀବନରେ ଆଉ କେଉଁଠି ପାଇ ନାହିଁ । ଚିତ୍ତଭାଇଙ୍କ ପରି ଜଣେ ବାଟ ଚାଲିବାର ସାଥୀ ମଧ୍ୟ ପାଇଲି- ଯାହାଙ୍କୁ ମୁଁ ପରବର୍ତ୍ତୀ ସମୟରେ ଅଧିକ ଅଧିକ ଅନୁଭବ କଲି । ମହାବିଦ୍ୟାଳୟ ସମୟରେ ଚିତ୍ତଭାଇଙ୍କ ସହିତ ସେମିତି ଯୋଗାଯୋଗ ଘଟିଲା ନାହିଁ । ନବମ ଶ୍ରେଣୀରେ ସେଇ ଥରେ ମାତ୍ର ସାମୟିକ ଦେଖା ହୋଇଥିଲା । ପାଠପଢ଼ା ଭିତରେ ମୋର ଦୃଢ଼ ପ୍ରଚେଷ୍ଟାର ମାନସିକତାଟିଏ ମହାବିଦ୍ୟାଳୟ ପର୍ଯ୍ୟନ୍ତ ସୃଷ୍ଟି ହୋଇ ପାରି ନଥିଲା— ଯାହାର ଅନୁପ୍ରେରଣାରେ କେବଳ ପାଠରେ ହିଁ ଲାଗି ରହିଥା'ନ୍ତି । ମୋର ଅସଲ ଉଦ୍ଦେଶ୍ୟ ଓ କର୍ତ୍ତବ୍ୟକୁ ବୁଝିବା ବଡ଼ କଷ୍ଟ ହେଲା । ପରିଣାମ ସ୍ୱରୂପ ଯେଉଁ ରାସ୍ତାଗୁଡ଼ିକ ସହଜ ଲାଗିଲା ସେଗୁଡ଼ିକ ଆବୋରି ନେବାପାଇଁ ଇଚ୍ଛା ହେଲା । ପଛଗୁଡ଼ାକ ଆଉ କୌଣସି କାମରେ ଲାଗି ନାହିଁ । ପିଲାଦିନ ଗୁଡ଼ାକ ମନେ ପକାଇବା ପାଇଁ ବଡ଼ ହିନିମାନିଆ

ଲାଗିଲା । ଆଉ ଚିରଭାଇ ତ ମୋ ପାଇଁ ଅପହଞ୍ଚ ଆକାଶର କେଉଁ ଏକ କ୍ଷୀଣପ୍ରଭା ତାରା ହୋଇ ରହିଲେ– ଯେମିତିକି ସିଏ ମୋଠାରୁ ଅନେକ ଦୂରରେ । କ୍ରମେ ମୁଁ ତାଙ୍କୁ ଭୁଲିଗଲି, ଯେମିତି ଅନ୍ୟ ଅନେକଙ୍କୁ ଭୁଲିଯାଉଥିଲି ।

ଯୁକ୍ତ ଦୁଇ ବିଜ୍ଞାନ ପଢୁଥିଲି । ବିଜ୍ଞାନ ପଢ଼ିବାର ମଜା ପାଇ ପାରିଲି ନାହିଁ । ପରୀକ୍ଷାରେ ଫେଲ୍ ହେଲି । ସେତେବେଳେ ମୋ ଭିତରେ ଏକ ଶକ୍ତ ଆଘାତ ଲାଗିଲା । ଅନେକ ଅବାଗିଆ ପ୍ରଶ୍ନ ଆସି ମୁଣ୍ଡ ଭିତରେ ଘାଣ୍ଟି ଗୋଳେଇ ହେଲା । ଜୀବନଟା ତୁଚ୍ଛ ଲାଗିଲା । ଚେଷ୍ଟା କଲେ କେହି କ'ଣ ବଦଳି ପାରିବ ନାହିଁ ? ମଣିଷ କିଏ କିପରି ହେବ ତାହା କ'ଣ ଆଗରୁ ସ୍ଥିର ନିଶ୍ଚିତ ହୋଇ ରହିଛି ? ଏହିପରି ଅନେକ ପ୍ରଶ୍ନର ଜାଲ ଭିତରେ ମୁଁ ମୋ ନିଜକୁ ଆଦୌ ସ୍ୱୀକାର କରି ପାରିଲି ନାହିଁ । କେବଳ ମୁଁ ମୋର ଅପାରଗ ଦିଗଟିକୁ ଦେଖିବାକୁ ଲାଗିଲି । କ୍ରମେ ସେହି ଦିଗଟି ତେଣୁ କାୟା ବିସ୍ତାର କଲା । ଏଣେ ଆଖିଗୁଡ଼ାକ ଟାଣି ହୋଇ ମୁହଁଟିର ରୂପ ବଡ଼ ବିରସ ହେବାକୁ ଲାଗିଲା । ଭିତରେ ଲୁଚି ରହିଥିବା ସୃଜନଶୀଳ ଦିଗଟିର ପ୍ରଭୂତ ଅବହେଳା ହୋଇ ଲୁପ୍ତ ପ୍ରାୟ ହେବାକୁ ବସିଲା । ଭିତରେ ମୁଁ ମୋ ନିଜକୁ ଯେତେ ଅଧିକ ଅଦରକାରୀ ବୋଲି ଭାବୁଥିଲି ବାହାରଟାକୁ ବି ସେତେ ପରିମାଣରେ ଅନାବଶ୍ୟକ ବୋଲି ଅନୁଭବ କରୁଥିଲି । କ୍ରମେ ଏହାର ମାତ୍ରାଧିକ୍ୟ ହେଲା । ବାରମ୍ବାର ଓଲଟା ପ୍ରଶ୍ନ ସବୁ ଜୁଟିଲା । ସେଗୁଡ଼ିକର ଉତ୍ତର କେଉଁଠୁ ହେଲେ ପାଇଲି ନାହିଁ । ମୁଣ୍ଡ ଝାଇଁ ଝାଇଁ ହେଲା । ମୁଁ କାହାକୁ ଜଣକୁ ମୋର ଦୁଃଖ କହିବା ପାଇଁ ଖୋଜିଲି । ଯିଏ ମୋ ଦୁଃଖ ଶୁଣି ଯଥାର୍ଥ ଉତ୍ତରଟିଏ ଦେଇ ପାରିବ ସେତେବେଳେ ମନେ ପଡ଼ିଲା ଚିରଭାଇଙ୍କ କଥା । ସେ ଜଣେ ଜ୍ଞାନୀ ବୋଲି ସେ ପର୍ଯ୍ୟନ୍ତ ଜାଣିଥିଲି । ତେଣୁ ସେ ମୋ ଦୁଃଖର କେତେକାଂଶ ତ ପ୍ରଶମିତ କରି ପାରିବେ !

ଚିଠିଟିଏ ଦେଲି । ମୋ ଭିତରେ ଏତେ ଆସକ୍ତି କାହିଁକି ରହିଛି ? ଏହି ପ୍ରଶ୍ନଟିରୁ ତାକୁ ଚିଠିଦେବା ଆରମ୍ଭ ହେଲା । ଏବଂ ଆଶ୍ଚର୍ଯ୍ୟ ଭାବେ ଉତ୍ତରଟି ଆସି ଅବିଳମ୍ବେ ପହଞ୍ଚିଲା । ଚିଠିଟିଏ ଦେଇଥିଲି ବୋଲି ଏକ ଲମ୍ବା ଅପେକ୍ଷାରେ ଥିଲି । ଅପେକ୍ଷାର ସମୟଟା ଏତେ ଶୀଘ୍ର ଶେଷ ହେବ ଭାବି ନଥିଲି । ଚିଠି ପାଇ ମୁଁ ସେଦିନ ଅନେକ ଖୁସି ହେଲି । ଚିଠିଟିକୁ ପ୍ରାୟ ପନ୍ଦର ଦିନ କାଳ ବାରମ୍ବାର ପଢ଼ିଛି । ଆମେ ନିଜକୁ ଜଣେ ସାଥୀ ଭାବି ନପାରି ଆମ ଭିତରର ମନ୍ଦଗୁଣଗୁଡ଼ିକ ସହିତ ସବୁ ବେଳେ ଯୁଦ୍ଧ କରିବାରେ ଲାଗୁ । ତେଣୁ ସେତେ କିଛି ଲାଭ ହୁଏ ନାହିଁ । ଚିରଭାଇଙ୍କ ଚିଠିର ଏହା ହିଁ ଥିଲା ମର୍ମ । ସେହି ଚିଠିଟି ପାଇବାଠାରୁ ମୋ ସହିତ କେହି ଜଣେ ଅଛି ଏବଂ ଆମେ ସାଙ୍ଗ ହୋଇ ବାଟ ଚାଲୁଛୁ ବୋଲି ଅନୁଭବ କରିବାକୁ ଶିଖିଲି ।

ଚିତ୍ତଭାଇ ମୋତେ ପ୍ରତ୍ୟେକ ଚିଠିରେ ଖୁସି ଓ ହାଲୁକା ରହିବା ପାଇଁ ପରାମର୍ଶ ଦେଇଛନ୍ତି । ଖୁସି ହେବାର ଉପକାରିତାଟି କ'ଣ ହୋଇପାରେ ପରବର୍ତ୍ତୀ ମୁହୂର୍ତ୍ତମାନଙ୍କରେ ମୁଁ ଅଧିକ ଅନୁଭବ କରିଛି । ଖୁସି ହେବା ଅର୍ଥ ଦୁଃଖରେ ମଧ ଖୁସି ହୋଇପାରିବା । ଜୀବନରେ ଏହି କୌଶଳଟିକୁ କେହି ସହଜରେ ଗ୍ରହଣ କରି ପାରେନା । ଯିଏ ସମସ୍ୟା ଗୁଡ଼ିକର ନିଶ୍ଚିତ ସମାଧାନ ପାଇବାକୁ ଚେଷ୍ଟା କରୁଥାଏ ସେ ହିଁ କେବଳ ଗ୍ରହଣ କରି ପାରେ ।

ପରବର୍ତ୍ତୀ ମୁହୂର୍ତ୍ତରେ ମୋ ଭିତରେ ଅନେକ ରୁଦ୍ଧ ଦୁଆର ଖୋଲିବାକୁ ଲାଗିଲା । ପଢ଼ିବାର ଇଚ୍ଛାଟିଏ ପାଇଲି, ଖୁସି ହୋଇ ମାତି ଯିବାର ସାହସଟିଏ ପାଇଲି । କ୍ରମେ ଚିତ୍ତଭାଇଙ୍କ ସହିତ ବନ୍ଧୁତା ବଢ଼ିଲା । ଅବଶ୍ୟ ମୁଁ ତାଙ୍କ ସଂସ୍ପର୍ଶରେ ଖୁବ୍ କମ୍ ଆସିଛି ଏବଂ ଘରେ ବାପା, ମା', ବିଦ୍ୟାଳୟର ଶିକ୍ଷକମାନଙ୍କ ସହିତ ଅଧିକ ସମୟ କଟାଇଛି । କିନ୍ତୁ ଚିତ୍ତଭାଇ ମୋର ଅସଲ ଶିକ୍ଷକ । ମୋତେ ସେ ଅନେକ କିଛି ଦେଇଛନ୍ତି, ଅଥଚ ପ୍ରତିବଦଳରେ କିଛି ନେଇ ନାହାନ୍ତି । ସ୍ନାତକୋତ୍ତର ଶିକ୍ଷା ଶେଷ କଲି । ଯା ଭିତରେ ମୁଁ ଅନେକ ବନ୍ଧୁ ପାଇଛି । ତଥାପି ମୁଁ ଚିତ୍ତଭାଇଙ୍କୁ ଭୁଲି ପାରି ନାହିଁ । ତଥାକଥିତ ବନ୍ଧୁର ସଂଜ୍ଞା ମଧ ସେ ବଦଳାଇ ଦେଇଛନ୍ତି । ସେ ଏତେ ବୟସ୍କ ହୋଇ ମଧ ମୋ ଜୀବନ ସହିତ ତାଙ୍କ ସ୍ନେହ, ଶ୍ରଦ୍ଧା ଓ ବନ୍ଧୁତ୍ୱଟି ଯୋଡ଼ି ହୋଇ ରହିଛି । ମୋ ପରି ସେ ଅନେକ ପିଲାଙ୍କୁ ବାଟ ଦେଖାଇଛନ୍ତି । ନିଜର ଯଥାର୍ଥ ପରିଚୟଟି ପାଇବାକୁ ଏପରିକି ଷଡଯନ୍ତ୍ର କରିଛନ୍ତି । କିନ୍ତୁ ଆଦୌ କୋଳାହଳ ନାହିଁ । ମଣିଷ ହିସାବରେ ମଣିଷମାନଙ୍କୁ ଭଲ ପାଇବାର ଅଦମ୍ୟ ସାହସଟିଏ ତାଙ୍କ ଭିତରେ ରହିଛି । ଦାରିଦ୍ର୍ୟ ଓ ଦୁର୍ବଳତାକୁ ଭୟକରି ଦରିଦ୍ର ଓ ଦୁର୍ବଳମାନଙ୍କୁ କେବେ ସେ ହତାଦର କରିବାର ଉଦାହରଣ କେହି ପାଇ ନାହିଁ । ବରଂ ସେଗୁଡ଼ିକର ମୁକାବିଲା ପାଇଁ ତଥାକଥିତ ଉପାୟ ଗୁଡ଼ିକର ଊର୍ଦ୍ଧ୍ୱକୁ ଯାଇ ସେ ବିକଳ୍ପ କିଛି କରିଛନ୍ତି । ଏହି ସାହସଟି ପାଇଁ ସେ ସବୁ ଶ୍ରେଣୀର ମଣିଷ ପାଖରେ ଘଡ଼ିଏ ବସି ପାରିଛନ୍ତି । ନିଜ ଭିତରର କେନ୍ଦ୍ରଟିକୁ ଉଖାଡ଼ିବାର ପ୍ରୟାସ କରିଛନ୍ତି । ସେହି କେନ୍ଦ୍ରଟି ସହିତ ସହୋଦର ହୋଇପାରିବାର ରାସ୍ତାଟି ଦେଖାଇ ଦେଇଛନ୍ତି । କେନ୍ଦ୍ରଟିର ଶକ୍ତିସମୂହର ପରିଚୟ କରାଇଛନ୍ତି ।

*ଶ୍ରୀ ଅରବିନ୍ଦ ରାଉତ*

*ଶ୍ରୀଅରବିନ୍ଦ ନବୋଦ୍ୟମ ଶିକ୍ଷାନିକେତନ*

*ମାତୃଭୂମି, ମାର୍କୋଣା, ବାଲେଶ୍ୱର*

# ଜୀବନ : ଆହୁରି ଅନେକ ଅନେକ...

ଅନେକ ଅଧ୍ୟାପକଙ୍କ ସହ ମୁଁ ମିଶିଛି । ଅନେକ ପାଠପଢ଼ା, ତତ୍ତ୍ୱ, ରାଜନୀତି ବିଷୟରେ ଆଲୋଚନା କରିଛି । ଅଥଚ ଜୀବନ ବିଷୟରେ ଆଲୋଚନା ପାଇଁ କୌଣସି ଅବସର ମୋ ଅଧ୍ୟାପକଙ୍କ ସହ ପାଇ ନ ଥିଲି । ଥରେ କାହିଁକି ଏମିତି ଇଚ୍ଛା ହେଲା- ମୋର ଜଣେ ଅତି ପରିଚିତ ଅଧ୍ୟାପକଙ୍କୁ ପଚାରିଦେଲି 'ଜୀବନ'ର ଅର୍ଥ କ'ଣ ? ଅଧ୍ୟାପକ ଜଣଙ୍କ ରାଗିଗଲେ । ମୋତେ କହିଲେ, ''ଏବେ ତୁମର ପାଠପଢ଼ା ଆଗ, ଜୀବନ ନୁହଁ ।'' ଜୀବନର ଅର୍ଥ କ'ଣ ପ୍ରଶ୍ନର ଉତ୍ତର ଏମିତି ପାଇବି ବୋଲି କଦାପି ମୁଁ ଆଶା କରିଥିବି କି ? ଉତ୍ତରଟି ପାଇଁ ଖୁବ୍ ଦୁଃଖ ଲାଗିଲା ମାତ୍ର ପରବର୍ତ୍ତୀ ଦିନ ମାନଙ୍କରେ ଏ ପ୍ରଶ୍ନଟି ଯେତେବେଳେ ମନରେ ଉଙ୍କିମାରେ, ସେତେବେଳେ ଭିତରୁ କିଏ କେଂଚି କହେ— ''ହଇରେ ପ୍ରଭାତ, ତୁ ଖାଲି ହସ ।'' ସତ କହୁଚି- ମୁଁ ଅନେକ ହସିଛି ମୋ' ଅଧ୍ୟାପକଙ୍କ ଜୀବନ ସମ୍ପର୍କିତ ଉତ୍ତରଟି ଶୁଣି । ଏବଂ ବାରବାର ଭିତରୁ ପ୍ରଶ୍ନ ଆସିଛି -- ଜୀବନ ଆଗ ନା' ପାଠପଢ଼ା ?

ମୋର ବୟସ ବଢ଼ିଲା । ଚିନ୍ତା ଚେତନା ବି ବଢ଼ିଲା । ମୁଁ ଆହୁରି ଚାଲିଲି, ଅନେକ ଦେଖିଲି । ଗୋଟିଏ ବିନ୍ଦୁ ଉପରେ ପାଦ ଦେଇ କେତେ ବିଶାଳତା ଆଡ଼କୁ ଗତି କରୁଛି ତା'ର କୌଣସି ମାପଚୁପ୍ କରିନି ସତ ମାତ୍ର ଯିବା ରାସ୍ତାରେ ପରିଚୟ ପାଇଲି ଅନ୍ୟ ଜଣେ ଅଧ୍ୟାପକଙ୍କର ମୋ'ର ଏକୋଇଶିତମ ଜନ୍ମ ତିଥିରେ । ସାହିତ୍ୟ ବିଷୟର 'ବିଦ୍ୟା ଓ ବିଦ୍ୟାର୍ଥୀ' ପ୍ରବନ୍ଧର ପ୍ରାବନ୍ଧିକଙ୍କୁ ଚିଠିଟିଏ ଲେଖିଲି, ତାଙ୍କ ଜ୍ଞାନଗାରିମାକୁ ନେଇ । ତାଙ୍କ ଜୀବନୀ ପଢ଼ି କିପରି ବିସ୍ମୟାଭିଭୂତ ହେଉଛି, କେମିତି ତାଙ୍କ ଦାର୍ଶନିକତାରେ ମୁଁ ସ୍ତବ୍ଧ, ଏମିତି ତାଙ୍କ ବିଷୟରେ କେତେ କେତେ ମହନୀୟ ଅନୁଭବକୁ ନେଇ ମୁଁ ଚିଠି ଲେଖିଥିଲି । କିନ୍ତୁ ଅସଲ ପ୍ରଶ୍ନଟି ଥିଲା— ଜୀବନ କ'ଣ ? ଚିଠି ଆସିଲା । ପନ୍ଦର ଦିନ ଅତିକ୍ରମ ପରେ । ଚିଠିରେ ଲେଖାଥିଲା—

''....ଏଥର ଚିଠି ଦେଲେ ନିଜ କଥା ଲେଖିବ । ମୋତେ ମହାନ୍ କହିଲେ ଦେଖିବ କଦାପି ମୋ' ପାଖକୁ ଆସିବା ପାଇଁ ଇଚ୍ଛା ହେବନାହିଁ । ମୋ' ଜୀବନୀ ପଢ଼ି

ଅଭିଭୂତ ହେଲେ, ମୋତେ ବୁଝିପାରିବ ନାହିଁ । ସାଧାରଣ ଭଦ୍ରତାରେ ଯେଉଁ ନିୟମ ଥାଏ- ସେହି ନିୟମ ମାନି ମୋତେ ମହାନ୍ ବୋଲି ସ୍ୱୀକାର କରିବ ନାହିଁ । ମୋତେ ମହାନ୍ କହି ତୁମେ ନିଜ ପ୍ରତି ଅନ୍ୟାୟ କରୁ ନାହଁ ତ ? ତୁମେ ନିଜକୁ ନ୍ୟାୟ ଦିଅ, ତା'ପରେ ଜୀବନ କ'ଣ ପ୍ରଶ୍ନର ଉତ୍ତର ଦେବି । କୌଣସି ଗୁରୁବାର ବା' ରବିବାର ଯଦି କ୍ଲାସରେ ଆସି ପହଞ୍ଚନ୍ତ, ବହୁତ ଖୁସୀ ହୁଅନ୍ତି ।''  ।। ଇତି ।।

ତୁମର ଚିତ୍ତଭାଇ

ମୁଁ ଚିଠି ଲେଖିଥିଲି ଅଧ୍ୟାପକ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସଙ୍କ ପାଖକୁ । ଉତ୍ତର ଆସିଲା, 'ତୁମର ଚିତ୍ତଭାଇ' ରୂପେ । କବିଗୁରୁ ରବି ଠାକୁରଙ୍କ କୌଣସି ଏକ ବହିର କିୟଦଂଶ ପରି ଲାଗିଲା:-

''କହୋ ଅମାୟ ଭାଇ/ତୋମାର କି ଗୁରୁ ମଶାଇ ନାଇଁ/ଭୁଲିୟେ ଦିଏ ପଢ଼ା/ ଆମାୟ ଶିଖା ଓ ସୁରେଗଢ଼ା/ତୋମାର ତାଲଭାଙ୍ଗାର ପାଠ/ଆର କି'ଚ୍ଛୁ ନା' ଚାୟ/ଯେନ୍ ଆକାଶ ପାନେ ଯାଇ/ଆର ପାଲିୟେ ଯାବାର ମାଠ ।''

ତା'ପରେ ଅନେକ ଗୁରୁବାର ଏବଂ ରବିବାର କ୍ଲାସକୁ ଯାଇଛି । ଶୁଣିଛି ବହୁତ କିଛି । ଏବେ ଯଦି କିଏ ପ୍ରଶ୍ନ କରେ: ''ପ୍ରଭାତ, ତୋତେ ଚିତ୍ତଭାଇ ଜୀବନ କଣ ପ୍ରଶ୍ନର ଉତ୍ତର ଦେଲେ ?'' ମୁଁ କହିବି, ''ହଁ ଏବଂ ନା ।'' ଏ କି କଥା ! ଯଦି କହିବି 'ହଁ' ଅଥବା 'ନା', ଏକବାର ଦୁଇଟା କଥା କେମିତି ହେବ ? ଥରେ କ୍ଲାସ ଶେଷରେ ପ୍ରଶ୍ନକଲି– ସେ ଉତ୍ତର ଦେଲେ, ''ଜୀବନ ଅର୍ଥ ଆହୁରି ଅନେକ କିଛି ।'' ମୁଁ ଅନେକ ଭାବି ଭାବି ତା'ର ଅର୍ଥ କିଛି ଜାଣି ପାରିଲି ନାହିଁ । ତେଣୁ କହୁଛି 'ନା' । ପୁଣି କିଛିଦିନ ପରେ ପ୍ରଶ୍ନ କଲି, ''ଚିତ୍ତଭାଇ ! ଆପଣ କହିଲେ ଜୀବନମାନେ ଆହୁରି ଅନେକ କିଛି । ତା'ର ଅର୍ଥ ମୁଁ କିଛି ବୁଝିପାରୁନି ।'' ମୋତେ ସେ ଚାହିଁଲେ । କ୍ଷୀଣ୍ ଆଲୋକ ରେଖାରେ ଉଦ୍‌ଭାସିତ ଜଣେ ଚିନ୍ତା ନାୟକଙ୍କ ପରି ଏବଂ କହିଲେ, ''ତୁମ ଜୀବନର ଅର୍ଥ ତୁମେ ବାହାର କରିବ । ମୁଁ କେମିତି ଜୀବନର ଅର୍ଥ କଣ କହିବି ? ମୁଁ ବା' କିଏ ? ମୁଁ କେବଳ ସମଗ୍ର ଜୀବନ ଅର୍ଥରେ କହିଲି ଆହୁରି ଅନେକ ଅନେକ । ତୁମେ ଯଦି ଜୀବନର ଅର୍ଥ ଖୋଜୁଛ ତେବେ ତୁମେ ନିଜକୁ ବେଶୀ ବେଶୀ ଭଲ ପାଅ । ଦେଖିବ ବଢେ ବଢେ 'ଆହୁରି ଅନେକ ଅନେକ'ର ଅର୍ଥ ପାଇଯିବ ।''

ସରକାରଙ୍କଠାରୁ ବେତନ ନେଇ ପଢ଼ାଉଥିବା ଶିକ୍ଷକଜଣଙ୍କ ମୋତେ କହିଲେ 'ତୋର ପାଠପଢ଼ା ଆଗ' ଅର୍ଥାତ୍ ଜୀବନ କିଛି ନୁହଁ । ପାଠ ପଢ଼ାରେ ମନ ଦିଅ, ସେ ସବୁ ବାଜେ ପ୍ରଶ୍ନକୁ ନେଇ ମୁଣ୍ଡ ଖରାପ କରନାହିଁ । ଏ ଅଧ୍ୟାପକ ଜଣଙ୍କ କହିଲେ, ''ଜୀବନ ଆଗ ତା'ପରେ ସବୁ ସମ୍ଭବ ।'' ଦୁଇଟା ଯାକ ଖୁବ୍

ବିରୋଧାତ୍ମକ କଥା । କାହା କଥାରେ ଯିବି ? ବେତନ୍ ନେଇ ପଢ଼ାଉଥିବା ଶିକ୍ଷକଙ୍କ ଆଖିରେ ଜୀବନ ହୁଏତ ଖାଲି ବେତନମୟ, ବେତନପାଇଁ ହିଁ ଯାବତୀୟ ପାଠପଢ଼ା ! ମାତ୍ର ଜୀବନର ବାଟ ଚାଲୁଥିବା ଅଧ୍ୟାପକଙ୍କ ପାଇଁ ଜୀବନ ଯେ ଆହୁରି ଆଗକୁ ଆଗକୁ ।

ଜୀବନ ଖୋଜୁଥିବା ପ୍ରଭାତ ଆଜି ଶିକ୍ଷକ । ଆପଣମାନଙ୍କ ଭାଷାରେ ଶିକ୍ଷକତା ମୋର 'ବୃତ୍ତି', ଅଥଚ ଶିକ୍ଷାଧାରୀମାନଙ୍କ ପରିମାପକାନୁଯାୟୀ ମୁଁ ଅନେକବାର ଦେଖୁଛି– ମୁଁ ଝୁଣ୍ଟୁଛି, ମୁଁ ବିଚଳିତ ହେଉଚି । କାରଣ ମୁଁ ପ୍ରଜାପତି ଧରୁଥିବା, ଫୁଲକୁ ଦେଖି ଦାନ୍ତନିକୁଟୁ ଥିବା ଅଥବା ନୀଳ ଆକାଶର ମେଘକୁ ଦେଖି ଆଖି ମିଟି ମିଟି କରୁଥିବା ପିଲାକୁ 'ଅ'-'କ'-'ବ' ଚାରିକାନ୍ଥ ଭିତରେ ଘୋଷାଇବା ବେଳେ, ମୋ' ବିବେକ ମୋତେ ମନ୍ଥି ଦେଉଛି । ମୋ' କୈଶୋର ମନେ ପଡୁଛି । ତେଣୁ ପିଲାଟିର ଏକ ସମ୍ଭାବନାମୟ ଆଗାମୀ ଦିନଗୁଡ଼ିକ ଦେଖି ଦଣ୍ଡଧରି ପାରୁନି । ସାହିତ୍ୟର ପ୍ରଶ୍ନୋତ୍ତର ଡ଼ାକିବା ପାଇଁ- ଇତିହାସର ପ୍ରଶ୍ନୋତ୍ତର ଡାକିଦେବା ପାଇଁ ଉପରୁ ହୁକୁମ୍ ଆସେ । ପ୍ରଭାତର ଛାତିରେ ଏସବୁ ଯାଏନି । ତେଣୁ ସେ ଏଇ ଅଧ୍ୟାପକଙ୍କୁ ପ୍ରଶ୍ନ ପଚାରିଛି । ଉତ୍ତର ଆସିଛି ଅଧ୍ୟାପକଙ୍କ ଠାରୁ । ''ପ୍ରଭାତ, ତୁମେ ଯଦି ଏମିତି ପ୍ରଶ୍ନର ଉତ୍ତର ଡାକିଦେବ ତେବେ ନିଜକୁ ବାଂଝ କରିବା ସହିତ ପିଲାଗୁଡ଼ାକୁ ବି ବାଂଝ କରିଦେବ ।'' ଓଃ ଶିକ୍ଷକତାରେ ଏତେ ଦାୟିତ୍ୱ ! ଶିକ୍ଷା ସମ୍ବନ୍ଧୀୟ କୌଣସି ଆଲୋଚନା ବେଳେ ଦେଖିଚି ଚିତ୍ତଭାଇଙ୍କ ଚିନ୍ତା ଚେତନାର ପରିସର କେତେ ବ୍ୟାପକ । ଶିକ୍ଷାର ତଥାକଥିତ ନିୟମ ପାଇଁ ସେ କେତେ ନିଷ୍ଠୁର ଅଥଚ ଅସଲଶିକ୍ଷା ପାଇଁ କେଡ଼େ ବ୍ୟାକୁଳ !

ଯଦି ଜଣେ ଶିକ୍ଷକ ଶିକ୍ଷାଦାନ ସହ ଅହରହ ଶିକ୍ଷା ଗ୍ରହଣ କରିପାରୁନି, ପିଲାଙ୍କ ସହ ହସି ପାରୁନି, ମିଶି ପାରୁନି, ସେ କି ଶିକ୍ଷକ ? ସେ ଶିକ୍ଷକ ନା ମାମଲତକାର ? ଏମିତି ଅନେକ ଦୃଢ଼ୋକ୍ତି ଶୁଣିଛି ଅନେକ ସମୟରେ ।

ମୋତେ ଲାଗେ ସିଏ ଏକ ଉଦାହରଣ ଆମ ସାମ୍ନାରେ । ମହତ୍ତର ପ୍ରଚେଷ୍ଟାର ଏକ ଡୁଙ୍ଗିମା । ସୃଜନର ଏକ ସାବଲୀଳ ଛନ୍ଦ । ସର୍ବୋପରି ଜ୍ଞାନ ଓ କର୍ଷଣର ଏକ ପ୍ରୟୋଗଶାଳା । ଏବଂ ମୋ' ଜୀବନ ଖୋଜା ପାଇଁ, ଜୀବନ: ଆହୁରି ଅନେକ ଅନେକ...।

*ପ୍ରଭାତ କୁମାର ନାୟକ*

*ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଶହୀଦ ନଗର*

# କାଷ୍ଠକୁ କରଇ ଚନ୍ଦନ

ମହାପୁରୁଷ, ଜ୍ଞାନୀ, ସାଧୁ, ସନ୍ଥ, ବିଦ୍ୱାନ୍, କବି, ଲେଖକ, ସୁପ୍ରତିଷ୍ଠିତ ସାହିତ୍ୟିକମାନଙ୍କ ସମ୍ବନ୍ଧରେ ଶୁଣିଛି, ଦେଖିନାହିଁ, ବିଭିନ୍ନ ଉପାଦେୟ ପୁସ୍ତକ ପଢ଼ିଛି, ପାଇନାହିଁ.....

କିନ୍ତୁ ଯାହାଙ୍କ ସାନିଧ ପାଇଛି, ସେ ହେଉଛନ୍ତି ଏକାଧାରରେ ଜଣେ କବି, ଲେଖକ, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ପ୍ରଖ୍ୟାତ ପର୍ଯ୍ୟଟକ ଉଚ୍ଚକୋଟୀର ଦାର୍ଶନିକ, ସୁପ୍ରସିଦ୍ଧ ମନୋବୈଜ୍ଞାନିକ, ଦରଦୀ ହୃଦୟର ବନ୍ଧୁ ମାନବପ୍ରେମୀ ସଫଳ ଶିକ୍ଷକ ଚିତ୍ତଭାଇ । ଗାନ୍ଧୀ, ରବୀନ୍ଦ୍ରନାଥ ଓ ଶ୍ରୀଅରବିନ୍ଦଙ୍କ ସମ୍ବନ୍ଧରେ ଜ୍ଞାନ ହାସଲ କରିଥିବା ପ୍ରଫେସର ଚିତ୍ତଭାଇଙ୍କୁ ଓଡ଼ିଶାରେ କାହିଁକି, ଭାରତର ବିଭିନ୍ନ ଶିକ୍ଷାନୁଷ୍ଠାନ ତଥା ବିଦେଶର କେତେ କେତେ ଶିକ୍ଷାୟତନ ଆଜି ମଧ ଜାଣିଛନ୍ତି । ତାଙ୍କର ବିରାଟ ଓ ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଶତ୍ରୁ ମିତ୍ରରେ ପରିଣତ ହୁଅନ୍ତି, କ୍ରୋଧୀ ଅନୁରାଗୀ ହୁଅନ୍ତି, ଅଭିମାନୀ ଓ ଅହଂକାରୀ ସମର୍ପିତ ହୃଦୟ ହୁଅନ୍ତି । ମଣିଷର ଗହନମନ ଅରଣ୍ୟର ସେ ପୋଖତ ଶିକାରୀ । ଦୁଃଖ, ବିଷାଦଗ୍ରସ୍ତ ମାନସିକ ବ୍ୟାଧିପ୍ରପୀଡ଼ିତ ମଣିଷର ପ୍ରବୀଣ ଚିକିତ୍ସକ ।

୧୯୭୯ ମସିହା । ମୁଁ ଖରିଦଛକ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଯୋଗଦେଇଥାଏ ଶିକ୍ଷକ ରୂପେ । ମା' ଶ୍ରୀଅରବିନ୍ଦଙ୍କ ଦର୍ଶନ ସମ୍ବନ୍ଧରେ ଅନଭିଜ୍ଞ ତଥା ପାଠଚକ୍ରରେ ଆଦୌ ଯୋଗ ଦେଉନଥିବାରୁ ସମସ୍ତେ ବଡ଼ ବିରକ୍ତ ଓ ବ୍ୟସ୍ତ ବିବ୍ରତ । ହଠାତ୍ ଦିନେ ସଞ୍ଜବେଳେ ଜଣେ ଧୋତି, ପଞ୍ଜାବୀପିନ୍ଧା କାନ୍ଧରେ ଏକ ଶାନ୍ତି ନିକେତନର ବ୍ୟାଗ୍ ପକେଇଥିବା ସୌମ୍ୟକାନ୍ତିଯୁକ୍ତ ମଣିଷଙ୍କୁ ଆବିଷ୍କାର କଲି । ଜୀବନରେ ତାହା ମୋର ଅବିସ୍ମରଣୀୟ ହୋଇ ରହିବ । ବଙ୍ଗାଳୀମାନଙ୍କ କାଇଦାରେ ମୁଁ ତାଙ୍କର ପାଦଛୁଇଁ ପ୍ରଣାମ କରିବାକୁ ଯିବା ସମୟରେ ମୋର ହାତଟିକୁ ଧରି ପକାଇ କହିଲେ, 'ଆରେ ତୁମେ ତ ଖୁଦିରାମର ଦ୍ୱିତୀୟ ସଂସ୍କରଣ !' ତରୁଣ ମନ ମୋର ତାଙ୍କ ପ୍ରତି ଆକର୍ଷଣ ଅନୁଭବ କଲା । ଆରେ ଏତେ ଦିନକେ ମୁଁ ଜଣେ ଜ୍ଞାନୀ ପଣ୍ଡିତଙ୍କର ସାକ୍ଷାତ ପାଇଲି । ତାଙ୍କ ପ୍ରତି କୃତଜ୍ଞତାରେ ମୋର ମନ ଓ ଅନ୍ତର ନଇଁ ଆସିଲା । ବିଦ୍ୟାଳୟର କତିପୟ ବନ୍ଧୁ ମୁଁ ପାଠଚକ୍ରକୁ ଓ ସମାଧିକୁ ଯାଉନଥିବା ବିଷୟରେ କଥା ହେଉଥାନ୍ତି । କୌଣସି

କଥାକୁ ଗୁରୁତ୍ୱ ନ ଦେଇ ମୋତେ ପରେ ପାଖକୁ ଡାକି କହିଲେ ଶ୍ରୀଅରବିନ୍ଦ ଧାମ ସ୍ୱର୍ଗଦ୍ୱାର ପୁରୀରେ ଏକ ଇଂଲିଶ ସେମିନାର ହେବ । ତୁମ୍ଭେ ନିଶ୍ଚୟ ଯିବ । ତାଙ୍କ ପାଖରୁ ଏହି ଆଶ୍ୱାସନାର କଥା ପଦିକ ଶୁଣି ମୁଁ ଯିବାକୁ ପ୍ରସ୍ତୁତ ହେଲି, ଗଲି ମଧ୍ୟ । ଅନେକ ସୁପ୍ରସିଦ୍ଧ ବ୍ୟକ୍ତି, ବକ୍ତା ଓ ଶିକ୍ଷକମାନଙ୍କର ସମାବେଶରେ ସେମିନାର୍ ଚାଲିଥାଏ । ଓଡ଼ିଶାର ପୂର୍ଣ୍ଣାଙ୍ଗ ଶିକ୍ଷାର ପ୍ରଣେତା ପ୍ରପତ୍ତି ମହାଶୟ ଚିତ୍ତଭାଇଙ୍କ ପାଖରେ ବସିଥାଆନ୍ତି । ମଞ୍ଚରୁ ଉଠି ଚିତ୍ତଭାଇ ଓଡ଼ିଶାର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ପାଠଚକ୍ର, ସଂଗଠକ ଓ ଶିକ୍ଷକମାନଙ୍କର ଭୂମିକା ସମ୍ବନ୍ଧରେ ବକ୍ତୃତା ପ୍ରଦାନ କଲେ । ମୋତେ ଜଣାପଡ଼ିଲା ବାଣୀପୁତ୍ର ପଣ୍ଡିତ ଓଜସ୍ୱିନୀବକ୍ତା, ଉତ୍କଳର ବାଗ୍ମୀ ଓ ପ୍ରଜ୍ଞାପୁରୁଷ ଚିତ୍ତଭାଇ ଯେପରି କେଉଁ ଏକ ଦେବଭୂମିରେ ପଦାର୍ପଣ କରିଅଛନ୍ତି । ପୁରୀ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଘଟିଥିବା ଏକ ଅବିସ୍ମରଣୀୟ ଘଟଣା ମୋର ଜୀବନର ମୋଡ଼ ପରିବର୍ତ୍ତନ କରିଦେଲା । ପୁଣି ବିଦ୍ୟାଳୟକୁ ଫେରିଆସି ସମାଧି ମନ୍ଦିରକୁ ଯିବା ଓ ପାଠଚକ୍ରରେ ବସିବା କାମ ଦେଖି ସଂଗଠକ ଓ ଭାଇ ଅପାମାନେ ବିସ୍ମୟ ପ୍ରକାଶ କଲେ । ଏ ପରିପ୍ରେକ୍ଷୀରେ ଭାଗବତରେ ଏକ ପଂକ୍ତି ଅଛି...

''ସାଧୁ ଯେ ମଳୟ ପବନ । କାଷ୍ଠକୁ କରଇ ଚନ୍ଦନ ॥''

ପରଶମଣିର ପରଶରେ ଲୁହା ସୁନା ହେଲାପରି ଚିତ୍ତଭାଇଙ୍କର ଏଭଳି ସମ୍ମୋହନୀଶକ୍ତିର ପ୍ରୟୋଗରେ ମୋ ଭିତରର ଅଜ୍ଞାନତା, କଳୁଷ, ରାଗ, ଅଭିମାନ ଓ ଅହଂକାର ବିଦୂରିତ ହେଲା । ସୂର୍ଯ୍ୟ କିରଣ ସ୍ପର୍ଶରେ କୁହେଳିକା ଅନ୍ତର୍ହିତ ହେଲାପରି ମୋର ଏକ ବିରାଟ ପରିବର୍ତ୍ତନ ଘଟିଲା । ଏହାପରେ ସେ ଆମ ବିଦ୍ୟାଳୟକୁ ଏକାଧିକବାର ଆସିଛନ୍ତି । କାନ୍ତି ଭଉଁରୀ ଯିବା ବାଟରେ ଆମ ଘରକୁ ଦୁଇଥର ଆସିଛନ୍ତି । ମୋର ଦରିଦ୍ର କୁଟୀରରେ ଏଭଳି ବ୍ୟକ୍ତି କିପରି ନିଜକୁ ଅତ୍ୟନ୍ତ ସରଳ ଓ ଅକପଟ ଭାବରେ ପିଲାଠାରୁ ବୁଢ଼ାଯାଏ ସମସ୍ତଙ୍କ ସହିତ ଅବାଧରେ ମିଶିଛନ୍ତି ଭାବିଲେ ତାଙ୍କର ଗଭୀର ପ୍ରଶସ୍ତ ହୃଦୟ ଆଖିଆଗକୁ ଆସିଯାଏ । କଥା କହିଲାବେଳେ ତାଙ୍କର ଅନ୍ତରଙ୍ଗତାର ତରଙ୍ଗ ମୋର ମନର ବେଳାଭୂମିକୁ ସ୍ପର୍ଶ କରେ । ସାଧାରଣ ମଣିଷ ପରି ଗତିବିଧି, ଆଚରଣ ଓ ବିଶ୍ୱପ୍ରେମ ମୋତେ ବାନ୍ଧିକି, ତାଙ୍କ ସଂସ୍ପର୍ଶରେ ଆସୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କର ଅବିସ୍ମରଣୀୟ । (କ୍ରମଶଃ)

*ବିକାଶରଞ୍ଜନ ପ୍ରଧାନ*

*ଖରିଦ ଛକ*

# ଚିତ୍ତଭାଇ ଓ ମୁଁ

ମୁଁ ଯେତେବେଳେ ଦଶମ ଶ୍ରେଣୀରେ ପଢୁଥିଲି ସେତେବେଳେ ଏକ ସଂଧ୍ୟାରେ ମୋର ପ୍ରପତ୍ତିଙ୍କ ସହିତ ପ୍ରଥମ ଦେଖା ହୋଇଥିଲା । ସେତେବେଳେ ପ୍ରପତ୍ତି ଓ ଚିତ୍ତଭାଇଙ୍କ ନାମ ମୋତେ ମୋ କକାପୁଅଙ୍କ ମାମୁଁ ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ଲେଙ୍କା କହିଥିଲେ । ସେଦିନ ସଂଧ୍ୟାରେ ପ୍ରପତ୍ତିଙ୍କ ସହିତ ଚିତ୍ତଭାଇ ଏକ ପାଠଚକ୍ରରେ ଯୋଗ ଦେବାର ଥିଲା; ମାତ୍ର କେତେକ ଅନିବାର୍ଯ୍ୟ କାରଣବଶତଃ ସେ ଯୋଗ ଦେଇପାରି ନ ଥିଲେ । ସ୍ଥାନ ଥିଲା କୈଳାସଚନ୍ଦ୍ର ଉଚ୍ଚବିଦ୍ୟାଳୟର ଗୋପବନ୍ଧୁ ଛାତ୍ରାବାସର ବାରଣ୍ଡା । ଅଳ୍ପ କେତେକ ପିଲା ଓ ଶିକ୍ଷକଙ୍କୁ ନେଇ ପାଠଚକ୍ରଟି ହୋଇଥିଲା ।

ପ୍ରପତ୍ତି ମା' ଓ ଶ୍ରୀଅରବିନ୍ଦଙ୍କ ବିଷୟରେ କେତେକ କଥା କହିଥିଲେ । ମୋତେ ମଧ୍ୟ ମୋର ନାମ ପଚାରିଥିଲେ । ପାଠପଢ଼ା ପରେ ମୁଁ କଣ କରିବି ବୋଲି ପଚାରିଥିଲେ । ହେଲେ ମୁଁ କିଛି କହିପାରି ନ ଥିଲି । ସେତେବେଳେ ମୁଁ ମୋର ପିତାଙ୍କ ଦାରିଦ୍ର୍ୟ ହେତୁ ଜଣେ ଭଦ୍ରଲୋକଙ୍କ ଘରେ ରହି ତାଙ୍କ ପିଲାଙ୍କୁ ପଢ଼ାଇ ନିଜେ ଅଧ୍ୟୟନ କରୁଥିଲି ।

ଏକାଦଶ ଶ୍ରେଣୀରେ ପଢ଼ାପଢ଼ି ଆରମ୍ଭ ହେଲା । ମୁଁ ସେ ଭଦ୍ରଲୋକଙ୍କ ଘରୁ କେତେକ ପୁରାତନ 'ନବଜ୍ୟୋତି' ଓ 'ନବପ୍ରକାଶ' (ଯାହାକୁ ଉଇ ଖାଇଦେଇଥିଲେ) ପଢ଼ିବାର ସୁଯୋଗ ପାଇଲି । ସେଥିରେ ଥିବା ଚିତ୍ତଭାଇ ଓ ନିରଞ୍ଜନ ନାୟକଙ୍କ ଲେଖା ମୋ ମନରେ ଏକ ବିରାଟ ଆଲୋଡ଼ନ ସୃଷ୍ଟି କଲା । ସେ ଲେଖାଗୁଡ଼ିକ ନିଜସ୍ୱ କରି ପଢ଼ିବା ସହ ତାକୁ ମୋ ଗୃହ ପାଠାଗାରରେ ଏପର୍ଯ୍ୟନ୍ତ ସାଇତି ରଖିଛି । ଚିତ୍ତଭାଇଙ୍କ ପ୍ରବନ୍ଧ 'ଆଦର୍ଶ ଶିକ୍ଷା' ଯାହାକି ସେତେବେଳର ବିଦ୍ୟାଳୟ ପାଠ୍ୟକ୍ରମରେ ନ ଥିଲା ମାତ୍ର ସାହିତ୍ୟ ବହିରେ ସ୍ଥାନ ପାଇଥିଲା । ତାକୁ ମୁଁ ପଢ଼ିଥିଲି । ତାହା ମୋ ମନରେ ବିଶେଷ ପ୍ରଭାବ ପକାଇଥିଲା । ଫକୀରମୋହନ ମହାବିଦ୍ୟାଳୟରେ ପଢୁଥିବା ସମୟରେ ଇଚ୍ଛା ଥିଲେ ବି ଚିତ୍ତଭାଇଙ୍କୁ ଦେଖା କରିବାକୁ ସୁଯୋଗ ପାଇ ନ ଥିଲି ।

ତା'ପରେ ମୁଁ ରେଭେନ୍ସା ମହାବିଦ୍ୟାଳୟ, କଟକରେ ପଢୁଥିବା ସମୟରେ ପ୍ରଥମ ଜଗନ୍ନାଥ ଛାତ୍ରାବାସ ଓ ପରେ ପୂର୍ବ ଛାତ୍ରାବାସରେ ରହୁଥିଲି । ସେତେବେଳେ ମୋର ସହପାଠୀମାନେ ମାତୃଭବନରେ ଚିତ୍ତଭାଇଙ୍କ ପାଠଚକ୍ର ହେବା ବିଷୟରେ ଖବର ଦେଲେ । ଘରୋଇ ଟିଉସନ୍ ଥିବା ଯୋଗୁଁ ମୁଁ ମନମୁତାବକ ପାଠଚକ୍ରରେ ଯୋଗ ଦେଇପାରି ନ ଥିଲି । ହେଲେ ଯେଉଁ କେତୋଟି ପାଠଚକ୍ରରେ ଯୋଗ ଦେଇଥିଲି, ତାହା ମୋ ପାଇଁ ପ୍ରଭାବଶାଳୀ ଥିଲା । ସେ ସମୟ ଓ ସମାବେଶ ଅବିସ୍ମରଣୀୟ ।

ତା'ପରେ ବାଣୀବିହାରରେ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇବାପରେ କେତେକ ସଭାସମିତିରେ ମୁଁ ଯୋଗ ଦେଇଥିଲି ସେଠାରେ ଚିତ୍ତଭାଇଙ୍କ ଭାଷଣ ମୋ ପାଇଁ ବିଶେଷ ଆକର୍ଷଣୀୟ ଥିଲା । ସମୟକ୍ରମେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଭୁବନେଶ୍ୱରରେ ଶିକ୍ଷକ ହିସାବରେ ଯୋଗଦେଲି ଓ ଚିତ୍ତଭାଇଙ୍କୁ ଭଲକରି ଜାଣିଲି । ସେତେବେଳେ ଚିତ୍ତଭାଇ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ପ୍ରତିଗୁରୁବାର ଦିନ ଅନୁଷ୍ଠିତ ପାଠଚକ୍ରକୁ ଆସୁଥାଆନ୍ତି ଓ 'ଯୋଗସମନ୍ୱୟ' ଆଲୋଚନା କରୁଥାନ୍ତି । ସେଠାରେ ତାଙ୍କଠୁ ମା' ଶ୍ରୀଅରବିନ୍ଦଙ୍କ ଲେଖାର ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ଶୁଣିବାର ସୌଭାଗ୍ୟ ମୋର ହୋଇପାରିଲା ନାହିଁ । ଅବଶ୍ୟ ଅନୁଷ୍ଠାନର ଜଣେ ଶିକ୍ଷକ ହିସାବରେ ଶିକ୍ଷା ସମ୍ବନ୍ଧୀୟ କେତେକ ଜଟିଳ ସମସ୍ୟା ସମାଧାନରେ ତାଙ୍କର ପରାମର୍ଶ ମୁଁ ନେଇଛି । ତାହା ଖୁବ୍ ସମୟୋପଯୋଗୀ । ଚିତ୍ତଭାଇ ମୋତେ ଉପଯୁକ୍ତ ପରାମର୍ଶ ଦେଇଛନ୍ତି । ମା' ଯାହା କହିଛନ୍ତି ''ଶିଶୁ ସୁଲଭ ହେବା'' ଓ ''ବୟସ ନିର୍ବିଶେଷରେ ଯୁବକହୋଇ ରହିବା'', ମୋ ମତରେ ତାହାର ଜ୍ୱଳନ୍ତ ଉଦାହରଣ ହେଲେ ଚିତ୍ତଭାଇ ।

*କୃତ୍ତିବାସ ନାୟକ*

*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଖଣ୍ଡଗିରି, ଭୁବନେଶ୍ୱର*

## ସେ ସକଳ ନାମଯଶର ଉର୍ଦ୍ଧ୍ୱରେ

ଚିତ୍ତଭାଇଙ୍କ ସହ ସାକ୍ଷାତ ପରିଚୟ ହେବାର ଯଥେଷ୍ଟ ପୂର୍ବରୁ ତାଙ୍କର ପରିଚୟ ପାଇଥିଲି ସାହିତ୍ୟ ମାଧମରେ । ସେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳର କଥା । ୧୯୫୧-୫୨ ମସିହା । ସେତେବେଳେ 'ଡଗର' ସାହିତ୍ୟ ପତ୍ରିକା ନୂଆ

ଲେଖକଙ୍କୁ ବହୁତ ଉତ୍ସାହ ଦେଉଥାଏ । ଆମ ଲେଖା ପ୍ରକାଶ କରୁଥାଏ । ତେଣୁ କଲେଜରେ ପାଦଦେବା ଆଗରୁ ଆମେ ଡଗର ମାଧ୍ୟମରେ ପ୍ରଥମେ ତାଙ୍କର ଧାରାବାହିକ 'ଡେନମାର୍କ ଚିଠି' ପଢ଼ିବାରେ ଆନନ୍ଦ ଅନୁଭବ କରୁଥିଲୁ । କାରଣ ସେତେବେଳକୁ ତ ଓଡ଼ିଆ ଲୋକ ଖୁବ୍ କମ୍ ବିଦେଶ ଯାଉଥିଲେ, ପୁଣି ସେଠାକାର ଅଭିଜ୍ଞତା ପ୍ରକାଶ କରିବା ବିରଳ ଥିଲା । ତେଣୁ ସେ ଦେଶ କଥା ତ ଯାହା ଜାଣୁଥିଲୁ ତା ଛଡ଼ା ତାଙ୍କ ଲେଖାରେ ଏପରି ଏକ ଆକର୍ଷଣୀୟ ଭାଷା ଓ ଶୈଳୀ ଥିଲା ଯେ ତାହା ଆମ ହୃଦୟକୁ ଛୁଇଁ ଯାଉଥିଲା । ପରେ ମୁଁ ଯେତେବେଳେ ସର୍ବୋଦୟ ଆନ୍ଦୋଳନରେ ବିନୋବାଜୀଙ୍କର ୧୯୫୫ ମସିହା ଭୂଦାନ ପଦଯାତ୍ରା ଦ୍ୱାରା ଉତ୍ସାହିତ ହେଲି ସେତେବେଳେ ତାହାର ମୁଖପତ୍ର 'ଗ୍ରାମସେବକ' ପତ୍ରିକାରେ ତାଙ୍କର ଧାରାବାହିକ 'ଜଙ୍ଗଲ ଚିଠି' ପଢ଼ିବାର ସୁଯୋଗ ମିଳିଲା । ଏ ଭିତରେ ତାଙ୍କର 'ପଞ୍ଚସଖା' ଓ 'ମହିମା ଧର୍ମ' ବହି ଦୁଇଟି ପଢ଼ିଥାଏ । ଏ ଦିଗରେ ମଧ୍ୟ ସେ ପୂର୍ବସୁରୀ କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଆମ ଭଳିଆ ସାହିତ୍ୟର ଅନର୍ସ ଛାତ୍ରଙ୍କ ପାଇଁ ଏଭଳି ଗବେଷଣା ପୁସ୍ତକ କିଛି ନ ଥିଲା । ପୁଣି ପଢ଼ିଲି ତାଙ୍କର ଗୋଟିଏ ଦୁଇଟି ଅନୁବାଦିତ ଉପନ୍ୟାସ । ଏମନ୍ତ ଯେ ବହୁଧାରାର ଲେଖକ ତାଙ୍କୁ ଦେଖିବା ପାଇଁ ମନ ଉଚ୍ଚାଟ ହେଉଥାଏ । ବୋଧହୁଏ ୧୯୫୬ କି ୫୭ ମସିହା ହେବ । ଆମେ ସର୍ବୋଦୟ ସଂସ୍କୃତି ସଂସଦ ତରଫରୁ କଟକ ଶ୍ରୀରାମଚନ୍ଦ୍ର ଭବନରେ ଏକ ସାପ୍ତାହିକ ଆଲୋଚନା ସଭାର ଆୟୋଜନ କରିଥାଉ । ସେଇଠି ଦିନେ ସଂଧ୍ୟାରେ ଦୂରରୁ ଦେଖିଲି ଚିତ୍ତଭାଇଙ୍କୁ । ପତଳା ନହକା ସରୁ ମଣିଷଟିଏ । କାନ୍ଧରେ ପକାଇଛନ୍ତି ଶାନ୍ତିନିକେତନ ଝୁଲାଟିଏ । ମିଟିଂପରେ ତାଙ୍କୁ ଦେଖିବାକୁ ଗଲା ବେଳକୁ ସଂଧ୍ୟାର ସେଇ ବିଳମ୍ବିତ ପ୍ରହରରେ ସେ କେତେବେଳେ ଖସି ଚାଲିଗଲେଣି ।

ଏ ଭିତରେ ଅନେକ ଦିନ ଗଡ଼ିଗଲା । ଓଡ଼ିଶାର ଏକ ଉପାନ୍ତ ଅଞ୍ଚଳକୁ କର୍ମଜୀବୀ ଭାବରେ ଚାଲିଯିବାରୁ ଆଉ ତାଙ୍କ ସାହିତ୍ୟ ସଂପର୍କରେ ଆସିବାର ସୁଯୋଗ ମିଳିଲାନି । କିଂତୁ ଶ୍ରୀଅରବିନ୍ଦଙ୍କର ଶତବାର୍ଷିକୀ ଗ୍ରନ୍ଥାବଳୀର ଓଡ଼ିଆ ଅନୁବାଦ ''ଦିବ୍ୟ ଜୀବନ'' ଓ ଅନ୍ୟାନ୍ୟ ଗ୍ରନ୍ଥ ଭିତରେ ପୁଣି ତାଙ୍କୁ ଆବିଷ୍କାର କଲି । ତେଣୁ ବୀରମିତ୍ରପୁରରେ ଶ୍ରୀଅରବିନ୍ଦଙ୍କ ଦେହାଂଶ ପ୍ରତିଷ୍ଠା ଅବସରରେ ସ୍ମରଣିକା ପାଇଁ ତାଙ୍କଠାରୁ ଲେଖାଟିଏ ପାଇବାକୁ ୧୯୮୩ ଡ଼ିସେମ୍ବର ମାସରେ ମୁଁ ତାଙ୍କ କଟକ ବାସଭବନରେ ଦେଖାକଲି । କଲିଂବେଲ ବଜାଇବା ମାତ୍ରେ ସେ ଦ୍ୱାର ଖୋଲି ମୋ ଆଗମନର ଉଦ୍ଦେଶ୍ୟ ପଚାରିଲେ ଓ ଲେଖାଟିଏ ଅତି ଶୀଘ୍ର

ପଠାଇବାର ପ୍ରତିଶ୍ରୁତି ଦେଇ ମତେ ସେଇ ଦାଣ୍ଡରୁ ଦାଣ୍ଡରୁ ବିଦା କରିଦେଲେ । ମନରେ ଟିକିଏ କଷ୍ଟ ହେଲା । ଯାହାଙ୍କୁ ଦୀର୍ଘ ବର୍ଷ ଧରି ଭେଟିବାର ଆକାଂକ୍ଷା ଥିଲା ତାହା ଯେ ଏତେ ଶୀଘ୍ର ଶେଷ ହୋଇଯିବ ଏହା ମୋର କଳ୍ପନାର ବାହାରେ ଥିଲା ।

ଯାହା ହେଉ ପୁଣି ତାଙ୍କୁ ଭେଟିବାର ଆହୁରି ଏକ ସୁବର୍ଣ୍ଣ ସୁଯୋଗ ଜୁଟିଗଲା । ସନ ତାରିଖ ମନେ ପଡୁନାହିଁ । ଶୁଣିଲୁ ସେ ରାଉରକେଲା ଆସି ତାଙ୍କ ସାନ ଭାଇଙ୍କ ଘରେ ଅବସ୍ଥାନ କରୁଛନ୍ତି । ଆମ ପାଠଚକ୍ରରେ ଏକ ଆଲୋଚନାରେ ଯୋଗ ଦେବାପାଇଁ ତାଙ୍କୁ ନିମନ୍ତ୍ରଣ କରିବାରୁ ସେ ଆନନ୍ଦରେ ରାଜି ହୋଇଗଲେ । ମୁଁ ଯେତେବେଳେ ରାଉରକେଲାରୁ ତାଙ୍କୁ ଗାଡ଼ିରେ ଆଣିଲି ପ୍ରାୟ ଘଣ୍ଟାଏ କାଳ ତାଙ୍କ ସହ ବ୍ୟକ୍ତିଗତ ଆଲୋଚନାର ସୁଯୋଗ ମିଳିଲା । ମୁଁ ପ୍ରାୟ ସାମ୍ବାଦିକସୁଲଭ ଢଙ୍ଗରେ ତାଙ୍କୁ ଅନେକ ବ୍ୟକ୍ତିଗତ ତଥା ଅନ୍ୟାନ୍ୟ ପ୍ରସଂଗ ଉପରେ ପ୍ରଶ୍ନମାନ ପଚାରିଗଲି । ସାମାନ୍ୟ ମାତ୍ର ବିରକ୍ତି ପ୍ରକାଶ ନ କରି ସେ ଅତ୍ୟନ୍ତ ସରଳ, ସହଜ ଓ ନିଷ୍କପଟ ଭାବରେ ସବୁର ଉତ୍ତର ଦେଉଥାନ୍ତି । ବହୁତ କଥା ତାଙ୍କଠାରୁ ମନ ପୂରେଇ ଶୁଣିଲି । ନିଜକୁ ଭାଗ୍ୟବାନ ମନେକଲି ।

ତାଙ୍କର ଜ୍ଞାନର ପରିଧି ଏତେ ବିଶାଳ ଓ ବିସ୍ତୃତ ଯେ କିଏ କହେ ସେ ସମାଜ ବିଜ୍ଞାନରେ ଡକ୍ଟରେଟ ତ କିଏ କହେ ମନସ୍ତତ୍ତ୍ୱରେ । ଏବେ ପୁଣି ଅଧ୍ୟାପକ ପ୍ରଫୁଲ୍ଲ ମିଶ୍ରଙ୍କ ଲେଖାରୁ ପଢ଼ିଲି ଯେ ସେ ଦାର୍ଶନିକ ସ୍ପିନୋଜାଙ୍କ ଉପରେ ଗବେଷଣା କରୁଥିଲେ । ସେ କିଂତୁ ସବୁ ନାମ ଯଶର ଊର୍ଦ୍ଧ୍ୱରେ । ଶିକ୍ଷା କ୍ଷେତ୍ରରେ ତାଙ୍କର ଯେଉଁ ମୌଳିକ ଚିନ୍ତାଧାରା ତାହା କେତେ ଡକ୍ଟରେଟଙ୍କୁ ଥିସିସ ଲେଖିବାକୁ ଖୋରାକ ଯୋଗାଇବ । ପରେ ତାଙ୍କ ସହ ଅନେକ ଥର ଅନେକ ପରିବେଶରେ ଭେଟ ହୋଇଛି । କେଉଁଠି ସେ ଅଳ୍ପ କେତେ ଜଣଙ୍କୁ ନେଇ ଶ୍ରୀଅରବିନ୍ଦଙ୍କର 'ଚିନ୍ତାକଣା ଓ ଦୃଷ୍ଟିନିକ୍ଷେପ' କ୍ଷୁଦ୍ର ରଚନା ଉପରେ ପ୍ଲାଟୋ ଆରିଷ୍ଟଟଲୀୟ ଧାରାରେ ଆଲୋଚନା କରୁଛନ୍ତି ତ' କେତେବେଳେ କେଉଁ ଅଖ୍ୟାତ ପଲ୍ଲୀରେ ତିରିଶ ଚାଳିଶ ଯୁବକଙ୍କୁ ନେଇ କର୍ମ ମାଧ୍ୟମରେ ମହାନ ଗ୍ରନ୍ଥ ''ଦିବ୍ୟ ଜୀବନ'' ଉପରେ ଆଲୋଚନା କରି ପ୍ରାଚୀନ ଯୁଗର ମୁନିଋଷିମାନଙ୍କର ଗୁରୁକୁଳ ଆଶ୍ରମର ଆଦର୍ଶ ଆଡ଼କୁ ଆମକୁ ମୁହାଁଇ ନେଇ ଯାଉଛନ୍ତି । ସେ ଖାଲି ତତ୍ତ୍ୱଦର୍ଶୀ ନୁହନ୍ତି, ଶିକ୍ଷାକ୍ଷେତ୍ରରେ ନାନା ଭାବରେ ପ୍ରୟୋଗାତ୍ମକ ଗବେଷଣା କରି ନିଜ ସିଦ୍ଧାନ୍ତକୁ ପରଖ କରିଛନ୍ତି । ପଥିକ ଭାବରେ ଗଞ୍ଜାମ ମାଳରେ ଘୁରିବାଠାରୁ ଯେ ଆମେରିକା ଯାଇ ଆମକୁ ତାଙ୍କ ଅଭିଜ୍ଞତା ନିଆରା ଦୃଷ୍ଟିରେ ଦେଖେଇଛନ୍ତି । ଚଲାପଥକୁ ଛାଡ଼ି

ଅମଡ଼ା ଆଡ଼କୁ ସର୍ବଦା ତାଙ୍କର ଦୃଷ୍ଟି । ସର୍ବୋଦୟରୁ ଶିକ୍ଷାତତ୍ତ୍ୱ, ସାହିତ୍ୟ ଓ ସଂସ୍କୃତିର ଇତିହାସଠାରୁ ବହୁ ମନନଶୀଳ ପ୍ରବନ୍ଧ ଗ୍ରନ୍ଥ, ବିଦେଶୀ ଉପନ୍ୟାସଠାରୁ ଶ୍ରୀଅରବିନ୍ଦଙ୍କର ଜଟିଳ ଦାର୍ଶନିକ ଗ୍ରନ୍ଥରାଜିର ସାବଲୀଳ ଅନୁବାଦ, ଦୈନିକ ସଂବାଦପତ୍ରର ସ୍ତମ୍ଭକାରଠାରୁ ବିଦେଶୀ ଭାଷାରେ ପାଠ୍ୟପୁସ୍ତକ ରଚନା– ଏମିତି କେତେ କେତେ ଦିଗନ୍ତକୁ ଯେ ତାଙ୍କର ସାହିତ୍ୟ ସ୍ପର୍ଶକରିଛି ତାହାର ଇୟତ୍ତା ନାହିଁ । ଜ୍ଞାନ ଓ କର୍ମର ଅପୂର୍ବ ସଂଗମ ଘଟିଛି ତାଙ୍କ ଜୀବନ ଓ ସାହିତ୍ୟକ୍ଷେତ୍ରରେ, ଯଦିଓ 'ଭାକ୍ତିକ ମିଥ୍ୟା'ର ସେ କଟୁ ସମାଲୋଚକ । ତେଣୁ ଭକ୍ତିଆ ମାନେ ତାଙ୍କୁ ହାଡ଼େ ହାଡ଼େ ଚିଡ଼ନ୍ତି, କିଂତୁ ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଏଭଳି ଏକ ବିରଳ ଇନ୍‌ଟେଲ୍‌କ୍ଚୁଆଲ ଓ ପ୍ରତିଭାଙ୍କର ଯେତିକି ମୁଁ ସାନ୍ନିଧ ଲାଭ କରିଛି ସେଥିରେ ମୋର ଜୀବନ ଧନ୍ୟ ହୋଇଯାଇଛି ।

*ରାଜକୃଷ୍ଣ ମହାନ୍ତି*
*ପୁରୀ*

## ଶ୍ରଦ୍ଧା ଓ ପ୍ରଜ୍ଞାର ଉତ୍ସ : ଚିତ୍ତଭାଇ

ପିଲାଠୁ ବୁଢ଼ା, ଜ୍ଞାନୀ, ଗୁଣୀ ସମସ୍ତଙ୍କର ପ୍ରିୟ ଚିତ୍ତଭାଇ । ସେ ଏକ ବିରଳ ଓ ବ୍ୟତିକ୍ରମ ବ୍ୟକ୍ତିତ୍ୱ । ୧୯୪୪ ମସିହାରେ ସ୍ୱାଧୀନତା ପାଇଁ କାରାବରଣ, ଅନେକ ବିଷୟରେ ଅଧ୍ୟୟନ ଓ ଅଧ୍ୟାପନା, ପୁଣି ଏକାଧିକ ଭାଷା, ଏମିତିକି ସାଙ୍ଗୀତିକ ରାଗରାଗିଣୀ ଇତ୍ୟାଦିକୁ କରାୟତ୍ତ କରି ଯୋଉ ବିଷୟରେ ଦି'ପଦ କହିଦେବାରେ ଚଳନ୍ତି ଜ୍ଞାନକୋଷଟି ହେଲେ ଚିତ୍ତଭାଇ !! ଏ ତ ମେଧାର କଥା କହିଲି, ହୃଦୟବତ୍ତା କୋଉ କମ୍ ଯେ ! ଊଣଅଶୀ ବୟସରେ, କାଂସବାହାଲକୁ ବାଙ୍ଗିରିପୋଷି, କୋରାପୁଟରୁ କଳାହାଣ୍ଡି କୋଉଠି ଦଙ୍ଗ କାଢୁଥିବେ, କୋଉଠି ମାଟି ଖୋଳୁଥିବେ, ପେଣ୍ଡୁଖେଳୁଥିବେ ତ କେଉଁ ଶ୍ରୀଅରବିନ୍ଦଙ୍କ ଭକ୍ତଭାଇଙ୍କର ଘରେ ପ୍ରବେଶି ଶ୍ରଦ୍ଧାର୍ଘ୍ୟ ଗ୍ରହଣ କରି ଫେରିଆସୁଥିବେ ।

ତାଙ୍କୁ ସାତବର୍ଷ ହେଲାବେଳୁ ବି ସେଇ ଗାଁ (ଜଗତ୍‌ସିଂହପୁରର ବାଗଲପୁର)କୁ ଜିପ୍ ଗାଡ଼ି ଆସୁଥାଏ । ସେତେବେଳେ ପ୍ରାକ୍-ସ୍ୱାଧୀନ କାଳ । ଅନ୍ୟ ଖେଳସାଥୀଙ୍କ ସଙ୍ଗେ ଚିତ୍ତଭାଇ ବି ଗାଡ଼ିପଛରେ ଧାଉଁଥିଲେ । ଥରେ ବାପା କହିଲେ, ଏମିତି କ'ଣ ସବୁ ହ'ନ୍ତି ? ତାଙ୍କର ରୋକ୍‌ଠୋକ୍ ଉତ୍ତର ଥିଲା–ହଁ,

ପିଲାମାନେ ହିଁ ଏମିତି ହଁନ୍ତି । ଧୂଳିଧୂଆଁ ମିଶା ଆନନ୍ଦରେ ଗୋଳି ହୋଇଯାଉଥିବା ପୁତ୍ର ବୟଃପ୍ରାପ୍ତି ପରେ ବାହାରକୁ ଆସିବାପରେ ଗାଁ ମୁଣ୍ଡରେ ପିତା ଖୁସାଲି ଦାସଙ୍କର ବିଦାୟକାଳୀନ କୋହ : ମୁଁ ଜାଣେ ତୁ ଯୋଉଠିକୁ ଯିବୁ ବାପା, ମା', ଭାଇ, ବନ୍ଧୁ କରି ରହିଯିବୁ । ସତରେ ଚିତ୍ତଭାଇ ସମସ୍ତଙ୍କୁ ଆପଣେଇ ବାଟ ଚାଲନ୍ତି । ଧୋତି ଖଦଡ଼ ପଞ୍ଜାବୀ ପରିହିତ ଏଇ ସୁପୁରୁଷଙ୍କ ସାତ୍ତ୍ୱିକ ଆଭାକୁ ସ୍ୱତଃ ପ୍ରଣାମ କରିବାକୁ ଇଚ୍ଛା ହୁଏ । ପ୍ରଜ୍ଞା, ଶ୍ରଦ୍ଧା, ସେବା ତ୍ରିଧାରାର ସମନ୍ୱିତ ବ୍ୟକ୍ତିତ୍ୱ ସିଏ, ତାଙ୍କର ତୁଳନା ହିଁ ନାହିଁ ।

ତାଙ୍କ ପାଖରୁ ରସିକତା ଓ ବ୍ୟଙ୍ଗ ପୁଣି ବେଳେ ବେଳେ ଛିଟିକି ଆସେ । 'ଜୀବନ ବିଦ୍ୟାଳୟ' ଓ 'ରୋହିତର ଡାଏରୀ' (ବହୁଖଣ୍ଡରେ ପ୍ରକାଶିତ) ତାଙ୍କର ଦୁଇଟି ମହାର୍ଘ୍ୟ (ଲଳିତ ନିବନ୍ଧ) ସୃଷ୍ଟି । ଏହାର ଛତ୍ରେ ଛତ୍ରେ ମାନବିକତାର ଉଦାତ୍ତ ଜୟଗାନ, ଜ୍ଞାନର ବ୍ୟାପ୍ତି, ଅନୁଭବର ବିସ୍ତୃତି, ଦାର୍ଶନିକ ଦ୍ୟୁତି ଉପଲବ୍ଧ । ସନ୍ଥ ସାହିତ୍ୟ ଓ ଭୀମଭୋଇ ଯାହାଙ୍କୁ ଆମେ ଏତେ ଗୁରୁତ୍ୱ ଦେଉନଥିଲେ ସେଇ ସାହସୀ, ବିପ୍ଳବୀ ଭୀମଭୋଇଙ୍କୁ କି ଉଚ୍ଚକିତ ମହିମାରେ ଚିତ୍ତଭାଇ ଝଲସାଇଛନ୍ତି । ଅମାନିଆ ହିଁ ବାଟଭାଙ୍ଗି ନୂଆବାଟରେ ଯାଏ- ଏଇ ବିଚାରକୁ ବ୍ୟାଖ୍ୟା କରି ଚିତ୍ତଭାଇଙ୍କର କି ସୁନ୍ଦର ଦାର୍ଶନିକ ସିଦ୍ଧାନ୍ତ । ଭିନୋବା ତାଙ୍କର ପ୍ରିୟ, ରବୀନ୍ଦ୍ର, ଶ୍ରୀଅରବିନ୍ଦ, ଗାନ୍ଧୀ, ଗୋପବନ୍ଧୁ, ଗୋପୀନାଥ, ମାନସିଂ ବି ତାଙ୍କର ପ୍ରିୟ । ଗ୍ରହଣଶୀଳ ଚେତନା, ଶ୍ରଦ୍ଧାଶୀଳ ସ୍ୱଭାବର ଏଇ ସଚଳ ବିଗ୍ରହ, ମୂର୍ତ୍ତପ୍ରତୀକଟି ଯେ ଆମମାନଙ୍କ ପାଇଁ ପ୍ରେରଣା, ତୃପ୍ତି ଓ ଅନୁଧାନର ପୀଠଟିଏ, ଅନୁଷ୍ଠାନଟିଏ ତାହା ବେଶ୍ ଉପଲବ୍ଧି କରିହୁଏ । ସର୍ବଜନଗ୍ରାହୀ ବ୍ୟକ୍ତି ଯେ ରାଜନୀତି (ପ୍ରତ୍ୟକ୍ଷ)ର ଧାର ଧାରନ୍ତି ନାହିଁ, କୌଣସି ପ୍ରଶାସନିକ ଭୂମିକାରେ ନ ଥାଇ ବି ସର୍ବମାନ୍ୟ ବ୍ୟକ୍ତି, ତାହାହିଁ ତାଙ୍କର ମହତ୍ତ୍ୱ । ସେଇ ଜ୍ଞାନସମର୍ଥିତ ସନ୍ଥପୁରୁଷଙ୍କୁ, ପ୍ରାଜ୍ଞପୁରୁଷଙ୍କୁ ହୃଦୟରୁ ମୋର ଗଭୀର ସମ୍ମାନ ଜ୍ଞାପନ କରୁଛି ।

*ଚିନ୍ମୟ ରାୟ*

*ଅଧ୍ୟାପକ, ରେଭେନ୍ସା ଜୁନିୟର କଲେଜ*

*କଟକ*

# ମୋ ଆଦରର ଚିତ୍ତଭାଇ...

୧୯୭୮ ମସିହା ଜୁନ୍ ମାସରେ କଟକ ମାତୃଭବନ ଶିକ୍ଷକ ତାଲିମ ଶିବିରରେ ମୁଁ ପ୍ରଥମେ ଚିତ୍ତଭାଇଙ୍କୁ ଦେଖେ । ଧଳାଧୋତି ପଞ୍ଜାବୀ ପିନ୍ଧା ବ୍ୟକ୍ତିଙ୍କୁ ଦେଖି ସରଳ ପୋଷାକ ଭିତରେ ସରଳ ମଣିଷଟିକୁ ମୁଁ ଆବିଷ୍କାର କରେ । ଶିକ୍ଷାଦାନର ଶ୍ରେଣୀକକ୍ଷରେ ଧୀରେ ଧୀରେ ମୁଁ ତାଙ୍କ ପାଖକୁ ଆଉଜିଯାଏ, ତାଙ୍କରି ସ୍ନେହର ସ୍ପର୍ଶରେ । ପ୍ରାୟ ପନ୍ଦର ଦିନ ଖୁବ୍ ଘନିଷ୍ଠଭାବେ ତାଙ୍କ ସାଙ୍ଗରେ ମିଶିବାକୁ ମୁଁ ସୁଯୋଗ ପାଏ । ଏକ ଭିନ୍ନ ଦୃଷ୍ଟିରେ ସମାଜକୁ, ଜୀବନକୁ, ବ୍ୟକ୍ତିକୁ ଓ ଘଟଣାବଳୀକୁ ଦେଖିବାର ଦୃଷ୍ଟିକୋଣ ମୁଁ ତାଙ୍କଠୁ ଶିକ୍ଷାକରେ ।

ସେହି ଶିକ୍ଷାଶିବିରରେ ଦିନେ କଥା ପ୍ରସଙ୍ଗରେ ତାଙ୍କୁ ମୋ ବ୍ୟକ୍ତିଗତ ଜୀବନର ଏକ ଘଟଣା କହିଲାପରେ ତାଙ୍କଠୁ ଅନେକ ଗାଳି ଶୁଣେ । ଆଉ ସେଇ ଗାଳି ମୋ ଜୀବନର ଚିନ୍ତା ଓ ଚେତନାକୁ ବଦଳାଇଦିଏ । ଘଟଣାଟି ଏହିପରି : ମୁଁ ସେତେବେଳେ ଦେଖିବାକୁ ଦୁର୍ବଳ । ଯଦିଓ ବେଶ୍ ଚଳଚଞ୍ଚଳ । ମୋତେ କେହି ମୋ ଦୁର୍ବଳତାର କାରଣ ପଚାରିବାରୁ ମୁଁ କହିଲି, ''ମୋତେ ୭ ବର୍ଷ ହେଲାବେଳେ ମୁଁ ଭୟଙ୍କର ଭାବେ ପକ୍ଷାଘାତ ରୋଗରେ ପୀଡ଼ିତ ହୋଇଥିଲି । ତାହାହିଁ ମୋତେ ଆଜିପର୍ଯ୍ୟନ୍ତ ଦୁର୍ବଳ କରି ରଖିଛି ।'' ଚିତ୍ତଭାଇ ସେଠି ଉପସ୍ଥିତ ଥିଲେ । ହଠାତ୍ ଭୟଙ୍କର ଗର୍ଜନ କରି କହିଲେ, ''ଛିଃ...ଛିଃ... ତୁମେ ସେ କ'ଣ କହୁଛ ? ତୁମକୁ ୭ ବର୍ଷ ବେଳେ ରୋଗ ହୋଇଥିଲା, ଆଉ ତୁମେ ଏବେ ୨୩ ବର୍ଷର । ସେ ରୋଗ କେବେଠୁ ତୁମକୁ ଛାଡ଼ି ଚାଲିଗଲାଣି । ଅଥଚ ତୁମେ ତାକୁ ଏପର୍ଯ୍ୟନ୍ତ ତୁମ ଭିତରୁ ତୁମ ମନରୁ ଛାଡ଼ିନାହଁ ! ଆଜିଠାରୁ ଆଉ ତୁମେ ଏପରି କହିବନି ।'' କେଜାଣି କେମିତି ମୋତେ ତାଙ୍କ କଥା ଏତେ ଯୁକ୍ତିଯୁକ୍ତ ମନେ ହେଲା ଯେ, ମୁଁ ସଂଗେ ସଂଗେ ନିଜର ଅଜ୍ଞତାକୁ ଉପଲବ୍ଧି କଲି ଓ ସେହି ମୁହୂର୍ତ୍ତରୁ ମୋ ଚେତନା ରାଜ୍ୟରୁ ସେ ସ୍ମୃତିକୁ ଚିର ବିଦାୟ ଦେଲି । ଅତୀତ ମୃତ ବୋଲି ଆମେ ସମସ୍ତେ କହିଲେ ବି ଅଜାଣତରେ ସେ ଆମ ଉପରେ ସବାର ହୋଇଥାଏ । ଯଥାର୍ଥ ଶିକ୍ଷକ ହିଁ ଉପଯୁକ୍ତ ଶିକ୍ଷାଦେଇ ଆମ ଭିତରର ଅଜ୍ଞାନତାକୁ ଏହିପରି ଦୂର କରିଦିଅନ୍ତି ।

ଶିକ୍ଷାଶିବିର ସରିଲା, ତା'ପରେ ମୁଁ ଶ୍ରୀଅରବିନ୍ଦଙ୍କ ଶିକ୍ଷା ଦର୍ଶନକୁ ନେଇ ଭୁବନେଶ୍ୱରର ୟୁନିଟ୍ ୨ର ପଟେଲହଲ ପରିସରରେ ପ୍ରତିଷ୍ଠିତ ଓଡିଶାର ପ୍ରଥମ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଶିକ୍ଷକ ହେବାପାଇଁ ବଛାବଛି ପରୀକ୍ଷା ଦେଲି । ସେତେବେଳେ ଚିତ୍ତଭାଇ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ ଥିଲେ । ଓଡ଼ିଆ ଶିକ୍ଷକ ପାଇଁ ଓ ଅନ୍ୟ ବିଷୟ ପାଇଁ ମଧ ଶିକ୍ଷକ ନିର୍ବାଚନ ପରୀକ୍ଷା ହେଉଥିଲା । ପ୍ରଥମେ ଆମକୁ ଲିଖିତ ପରୀକ୍ଷା ଦେବାକୁ ପଡ଼ିଲା । ସେହି ପରୀକ୍ଷାରେ ଓଡ଼ିଆରେ ପ୍ରବନ୍ଧଟିଏ ଲେଖିବାକୁ କୁହାଯାଇଥିଲା । ପ୍ରବନ୍ଧଟି ଚିତ୍ତଭାଇ ଠିକ୍ କରିଥିଲେ । ତା'ର ଶିରୋନାମା ଥିଲା– "ଶିଶୁ ଏକ ଶୂନ୍ୟପାତ୍ର ନୁହେଁ, ତାକୁ ଭରିବାକୁ ହେବ । ଶିଶୁ ଏକ ଆଲୋକବର୍ତ୍ତିକା, ତାକୁ ଜାଳିବାକୁ ହେବ ।" ଏପରି ପ୍ରବନ୍ଧ ମୁଁ ଆଗରୁ ଛାତ୍ର ଜୀବନରେ କେବେ ବି ଲେଖିନଥିଲି । ତଥାପି ଲେଖିଲି । ଇଂରାଜୀ ବ୍ୟାକରଣକୁ ନେଇ ମଧ ପରୀକ୍ଷା ହେଉଥିଲା । ତା'ପରେ ବ୍ୟକ୍ତିଗତ ସାକ୍ଷାତକାର । ଶେଷରେ ୧୫ ଦିନପରେ ମୁଁ ଶିକ୍ଷାକେନ୍ଦ୍ରରେ ଶିକ୍ଷକଭାବେ ଯୋଗ ଦେବାକୁ ଚିଠି ପାଇଲି । ଖୁସି ହେଇ ୧୯୭୮ ଜୁଲାଇ ୧୩ ତାରିଖ ଦିନ ଶିକ୍ଷାକେନ୍ଦ୍ରରେ ଯୋଗ ଦେଲି । ଚିତ୍ତଭାଇଙ୍କୁ ପ୍ରଥମେ ସାକ୍ଷାତ କଲି । ଦେଖୁ ଦେଖୁ ସେଦିନ ଯାହା କହିଥିଲେ ଏବେ ବି ମୋର ମନେ ଅଛି । ମୋତେ ପାଖକୁ ଡାକି ଅତି ସ୍ନେହରେ କହିଥିଲେ, "ପ୍ରଦୀପ୍ତ ! ତୁମେ ଓଡ଼ିଆରେ ଖୁବ୍ ସୁନ୍ଦର ଭାବେ ତୁମର ଭାବନାକୁ ପ୍ରକାଶ କରିଛ । ମୁଁ ବହୁତ ଖୁସି ହେଇ ୨୫ ନମ୍ବରରୁ ତୁମକୁ ୨୩ ଦେଇଛି । କିନ୍ତୁ ଇଂରାଜୀରେ ୨୫ରୁ ତୁମେ ୫ ମଧ ରଖିନାହିଁ । ଓଡ଼ିଆରେ ଯେପରି ଦକ୍ଷତା ଅର୍ଜନ କରିଛ ଇଂରାଜୀରେ ବି ସେପରି ଦକ୍ଷ ହୁଅ । ମୁଁ ତୁମକୁ ଇଂରାଜୀ ପଢ଼ାଇଦେବି ।" ଅନେକ ଆନନ୍ଦ ପାଇଲି । ଇଂରାଜୀରେ ଅତି ଦୁର୍ବଳ ବୋଲି ସେ ମୋତେ ଜଣାଇଲେ ବି ସେଥିପାଇଁ ଦୁଃଖ ହେଲାନି, କାରଣ ସେ ମୋତେ ପଢ଼ାଇ ଦେବେ ଏ କଥା ଶୁଣି ମୁଁ ବହୁତ ଖୁସି ହୋଇଯାଇଥିଲି ଓ ଆଶା କରିଥିଲି ଇଂରାଜୀରେ ମଧ ମୁଁ ଦକ୍ଷ ହୋଇପାରିବି । ସେଦିନ ଚିତ୍ତଭାଇ କୌଣସି କାର୍ଯ୍ୟରେ ଭୁବନେଶ୍ୱର ବାହାରକୁ ଗଲେ । ମୁଁ ଅନାଇ ବସିଲି ତାଙ୍କର ଫେରିବା ବାଟକୁ । କିନ୍ତୁ... ସବୁକିଛି ଓଲଟପାଲଟ ହୋଇଗଲା ମୋ ଭାଗ୍ୟକୁ । ସେ ୭ ଦିନ ପରେ ଫେରିଲେ ଏବଂ ଶିକ୍ଷାକେନ୍ଦ୍ରରୁ ବିଦାୟ ନେଇ ଚାଲିଗଲେ । ମୋ ଆଶା ଆଶାରେ ହିଁ ରହିଗଲା । ମୁଁ ଇଂରାଜୀରେ ସେହିପରି ଦୁର୍ବଳ ହୋଇ ରହିଗଲି ....।

ତା'ପରେ ମଝିରେ ମଝିରେ ତାଙ୍କ ସହ ଦେଖାହୁଏ କଟକରେ । ଥରେ ତାଙ୍କରି ସହ ମିଶିବାପାଇଁ ସାଇକେଲରେ ଭୁବନେଶ୍ୱରରୁ ବାହାରି କଟକ

ଯାଇଥିଲି । କଟକରେ ତାଙ୍କ ବସାରେ ଖାଇପିଇ ଅନେକ ସମୟ କଥା ହୋଇଥିଲି ।

ବେଳେ ବେଳେ ତାଙ୍କ ସହ ମୋର କଥା କଟାକଟି ହୁଏ । ସମାଲୋଚନାର ତୀକ୍ଷ୍ଣ ଛୁରୀରେ ସେ ଯେପରି ଅନ୍ୟାୟରୂପୀ ଆବୁକୁ କାଟି ପକାନ୍ତି ମୁଁ ସେପରି ପାରେନାହିଁ । ମନ୍ଦ ଭିତରେ ଭଲ ଖୋଜି ବର୍ଣ୍ଣନା କଲାବେଳେ ସେ କୁହନ୍ତି, ''ଭୟ ବା ସଂକୋଚ କରି ତୁମେ ଅସଲ ବାସ୍ତବତାକୁ ଘୋଡ଼ାଇ ପକାଉଛ । ଏହା ଶିକ୍ଷକର ଧର୍ମ ନୁହେଁ ।'' ଏହି କାରଣରୁ ଅନେକ ଥର ମୁଁ ତାଙ୍କଠୁ ଗାଳି ଶୁଣିଛି ସମସ୍ତଙ୍କ ଆଗରେ । କିନ୍ତୁ ସେ ଗାଳି ସେଇଠି, ସଭା ସରିବାପରେ ପୁଣି ସେମିତି ହସ ହସ ମୁହଁରେ ସେ କଥା ହୁଅନ୍ତି ଓ ଆମକୁ ବୁଝନ୍ତି । ମନ ବୁଝିଯାଏ ତାଙ୍କ ଅସଲ ଉଦ୍ଦେଶ୍ୟକୁ । ଥରେ କହୁ କହୁ ମୁଁ କହିଦେଲି, ''ଚିଉଭାଇ, ମୁଁ ଆପଣଙ୍କ ହୃଦୟକୁ ବୁଝି ପାରିଲି । ହେଲେ ଆପଣଙ୍କ ମସ୍ତିଷ୍କକୁ ନୁହେଁ ।'' ହସି ହସି କହିଲେ, ''ମୋ ମସ୍ତିଷଟା କ'ଣ ଭାରି ଜଟିଳ ?''

ଥରେ ଦିଲ୍ଲୀରେ ସର୍ବଭାରତୀୟ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଶିକ୍ଷକ ସମ୍ମିଳନୀ ହେଉଥାଏ । ଓଡ଼ିଶାରୁ ଅନେକ ଯୋଗ ଦେଇଥାନ୍ତି । ଦିନେ ସନ୍ଧ୍ୟାରେ ଆମେମାନେ ଦିଲ୍ଲୀରେ ହେଉଥିବା ରାମଲୀଳା ଦେଖିବାକୁ ଯାଇଥାଉ । ତାରା ଦିଦି ତା'ର ବ୍ୟବସ୍ଥା କରିଥାନ୍ତି । ଦିଲ୍ଲୀ ସ୍କୁଲର ବସ୍ ଆମକୁ ନେଇ ଯାତ୍ରାସ୍ଥାନରେ ଛାଡ଼ିଦେଲା ଓ ଆମେ ଯାତ୍ରା ଦେଖିଲୁ । ରାତି ୧୦ଟାରେ କାର୍ଯ୍ୟକ୍ରମ ସରିବା ପରେ ଆମେ ବସ୍‌କୁ ଅପେକ୍ଷା କରିଥାଉ । କିନ୍ତୁ ବସ ଖରାପ ହେଇଯିବାରୁ ଆଉ ବସ୍ ଗଲାନାହିଁ । ଆମକୁ ନିଜ ନିଜ ସୁବିଧାରେ ଫେରିବାକୁ ପଡ଼ିଲା । ସେତେବେଳେ ଏକ ଅଭାବନୀୟ ପରିସ୍ଥିତି ଦେଖାଦେଲା । କିଏ କାହାକୁ ପଚାରିଲେନି । କିଏ କାହାକୁ ଅପେକ୍ଷା କଲେନି । ଅହଂ ସର୍ବସ୍ୱ ହୋଇ ''ଆପେ ବଞ୍ଚିଲେ ବାପର ନାଁ'' ଏହି ନୀତିରେ ଟାଉନବସ୍‌ରେ ଯେ ଯାହାର ଚଢ଼ିଗଲେ । ବସଗୁଡ଼ିକ ବହୁତ ଗହଳି ଥିଲା । ଶେଷକୁ ଚିଉଭାଇ ଓ ଆମେ ପ୍ରାୟ ୯-୧୦ ଜଣ ରହିଯାଇଥିଲୁ । ସମସ୍ତେ ଚାଲି ଚାଲି ଫେରିଲୁ । ସେତେବେଳେ ଚିଉଭାଇ ଯେଉଁ କଥାସବୁ କହିଥିଲେ ତାହା ମୋ ହୃଦୟରେ ଏବେବି ଲେଖା ହୋଇ ରହିଛି ।

ସେ କହିଲେ, ''ଆମ ଓଡ଼ିଆମାନଙ୍କର ନୀତିକୁ ଦେଖ । ଓଡ଼ିଶାରୁ ଏକାଠି ଆସିଥିଲେ ବି ଅସୁବିଧା ବେଳେ କେହି କାହାର ହେଲେନି । ନିଜସ୍ୱାର୍ଥ ବଡ଼ ହେଇଗଲା । କିନ୍ତୁ ଇଂରେଜମାନଙ୍କୁ ଦେଖ । ସମୁଦ୍ର ଭିତରେ ଜାହାଜ ବୁଡ଼ିଯାଉଥିବା ଅବସ୍ଥାରେ ବି ଜାହାଜରେ ଥିବା ଉଦ୍ଧାରକାରୀ ଡଙ୍ଗାରେ ପ୍ରଥମେ

ଶିଶୁ, ବୃଦ୍ଧ, ମହିଳାମାନେ ଯା'ନ୍ତି । ନିଜ ଜୀବନ ବଞ୍ଚାଇବାକୁ ସେଠି ଠେଲାପେଲା ହୁଅନ୍ତି ନାହିଁ । ଆସନ୍ନ ମୃତ୍ୟୁର ଦ୍ୱାର ଦେଶରେ ଥାଇ ବି ସେମାନେ ନିଜ ନିଜର ସ୍ୱାର୍ଥପାଇଁ ପାଗଳ ନ ହୋଇ ଜାତୀୟ କର୍ତ୍ତବ୍ୟକୁ ପାଳନ କରନ୍ତି ।'' ଭାରି ଲାଗିଲା ସେକଥା ଶୁଣି । କିନ୍ତୁ ସେଦିନ ଶିଖିଲି ବିପଦ ବେଳେ ଧୈର୍ଯ୍ୟ ନ ହରାଇ ଶେଷପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଓ ଅନ୍ୟକୁ ରକ୍ଷା ପାଇବା ପାଇଁ ସୁଯୋଗ ଦେବାକୁ ।

ମୁଁ ଯାହାଠୁ ଏସବୁ ଶିଖିଥିଲି ଏକ ସୁଯୋଗ ପାଇ ମୋ ଝିଅ ବନ୍ଦନାକୁ ତାଙ୍କ ପାଖରେ ୪/୫ ଦିନ ରହି ସେହି ଶିକ୍ଷାଲାଭ କରିବାକୁ ଉତ୍ସାହିତ କଲି । ମୋଠୁ ଉତ୍ସାହ ପାଇ ସେ ରାୟଗଡ଼ା ନବପଲ୍ଲବ ଶିବିରରେ ଯୋଗଦେଲା । ସେଠୁ ଫେରି ମୋ ଆଗରେ କହିଲା, ''ଚିତ୍ତଭାଇଙ୍କ ଯୋଗୁ ମୋର ଦୃଷ୍ଟି ଏକ ଭିନ୍ନ ଜଗତକୁ ଦେଖି ପାରିଲା । ତାଙ୍କ ବ୍ୟତୀତ ସେପରି ଦୃଷ୍ଟି ହୁଏତ ମୁଁ ଜୀବନରେ ପାଇନଥାନ୍ତି । ସେ ମୋତେ କୁହାଇଲେ, ଦୂର ଦିଗ୍‌ବଳୟର ଅନ୍ୟ ଏକ ପାଖ ଦେଖାଇଲେ ।'' ମୁଁ ମନେ ମନେ ଖୁବ୍ ଖୁସି ହେଲି ଓ ମୋର ଆନ୍ତରିକ ପ୍ରଣାମ ଜଣାଇଲି ମୋ ଆଦରର ଚିତ୍ତଭାଇଙ୍କୁ....।

*ପ୍ରଦୀପ୍ତ କୁମାର ମିଶ୍ର*
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର*
*ଭୁବନେଶ୍ୱର*

# ପ୍ରକୃତ ବଡ଼ଲୋକ

ସାତ ଆଠ ବର୍ଷ ତଳେ ମେ ମାସ ଖରା ଦିନ ପ୍ରାୟ ବାରଟା ବେଳକୁ ବଡ଼ପୁଅ ପାଇଁ ମୁଁ ଜଣେ ଶିକ୍ଷକଙ୍କ ସନ୍ଧାନରେ ବଡ଼ପୁଅ (ମଣ୍ଡନ ମିଶ୍ର)କୁ ନେଇ ସାଙ୍ଗରେ ଯାଇଥାଏ । ଖୋଜି ଖୋଜି ନ ପାଇବାରୁ ଯେତେବେଳେ ବାପୁଜୀ ନଗରରେ ପହଞ୍ଚିଲି, ଆପେ ଆପେ ମୋର ଗାଡ଼ି ଚିତ୍ତଭାଇଙ୍କ ଘର ଆଡ଼େ ମାଡି ଚାଲିଲା । ମୁଁ ଯାଇ ଖବର ଦେଲି । ଶୁଣିଲି ଚିତ୍ତଭାଇ ଖାଇବସିଛନ୍ତି । ପୁଅ ମୋତେ କହିଲା– ତୁମେ କାହିଁକି ଏ ବଡ଼ଲୋକମାନଙ୍କ ଘରକୁ ଆସ ? ମୁଁ ଟିକିଏ ହସି କହିଲି– ଅପେକ୍ଷା କର ।

କିଛି କ୍ଷଣ ପରେ ଚିତ୍ତଭାଇ ସେହିଭଳି ଅଇଁଠା ହାତରେ ଅଧାଖାଇବାରୁ ଉଠିଆସି ପହଞ୍ଚିଲେ । ମୁଁ କହିଲି, ଆପଣ ଅଧା ଖିଆରୁ କାହିଁକି ଆସିଲେ ?

ସେ କହିଲେ– 'ଖାଇସାରି ମୁଁ ରେଳରେ ଭଦ୍ରକ ଯିବି ।' ସେଠି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରଟିଏ ବିପର୍ଯ୍ୟସ୍ତ ହୋଇଯାଇଥାଏ ବା ଜଣେ ଭାଇଙ୍କ ଦେହ ଖରାପ ଥାଏ । ତେଣୁ ସେ କହିଲେ– 'ମୋତେ ଏବେ ଯିବାକୁ ପଡ଼ିବ । ଆଉ ଅନ୍ୟାନ୍ୟ ଖବର ସବୁ ଭଲ ତ ?' ତାଙ୍କର କୁଶଳ ଜିଜ୍ଞାସା ପରେ ପୁଅର ପଢ଼ା ବିଷୟରେ ମୁଁ ତାଙ୍କୁ ଟିକେ ସୂଚନା ଦେଲି । ଏହା ଶୁଣି ଚିତ୍ତଭାଇ ମୋତେ ପରାମର୍ଶ ଦେଲେ– 'ନିଜେ ପଢ଼ାନ୍ତୁ ପୁଅକୁ' । ମୁଁ କହିଲି ଏକ ନିର୍ଦ୍ଦିଷ୍ଟ ପ୍ରବେଶିକା ପରୀକ୍ଷାପାଇଁ ନିର୍ଦ୍ଦିଷ୍ଟ ବିଷୟ ପଢ଼ାଇବା ପାଇଁ ମୋର ସମୟ ଓ ସାମର୍ଥ୍ୟ ନାହିଁ । ସେ ଅଧାଖିଆରୁ ଉଠି ଆସିଥିଲେ ବୋଲି ମୋତେ ମାଡ଼ି ପଡୁଥିଲା ମୁଁ ତେଣୁ କଥା ନ ବଢ଼ାଇ କହିଲି, 'ଆପଣ ଆପଣଙ୍କ ଖାଇବା ଶେଷ କରି ବିଶ୍ରାମ ନେଇ ଯିବେ, ମୁଁ ଆସୁଛି' ସେ ଅଧାଖିଆରୁ ଆସିଲେ । ମୁଁ କହିଲି ଆପଣ ଆପଣଙ୍କ ଖାଇବା ଶେଷକରି ବିଶ୍ରାମ ନେଇ ଯିବେ ମୁଁ ଯାଉଛି । ବାଟରେ ଆସିବାବେଳେ ପୁଅକୁ ପଚାରିଲି– 'କିରେ ଇଏ କିମିତି ବଡ଼ଲୋକ' ? ପୁଅ ଗଦ୍‌ଗଦ୍ ହୋଇଗଲା । ସ୍ତବ୍ଧ ହୋଇ କିଛି କହିଲାନି ।

ମୁଁ ସବୁବେଳେ ଭାବେ ମୋର ପୁଅଝିଅ ଓ ଶିଷ୍ୟ ଶିଷ୍ୟାମାନେ ଏହିଭଳି ଜଣେ ବିରଳ ବ୍ୟକ୍ତିତ୍ୱକୁ ଦେଖନ୍ତୁ । ତେଣୁ ତାଙ୍କ ପାଖକୁ ଗଲେ ସାଙ୍ଗରେ ଜଣ ଜଣକୁ ନେଉଥାଏ । ତାଙ୍କୁ ଭେଟିବାରେ ସମୟ ବ୍ୟବଧାନ ଥିଲେ ମଧ ତାହା ଥାଏ ଖୁବ୍ ଆନ୍ତରିକ ଓ ଆତ୍ମୀୟ ।

ତାଙ୍କୁ ଦୂରରୁ ଦେଖିଥିଲି ୧୯୭୩ ମସିହାର ରେଭେନ୍ସା ମହାବିଦ୍ୟାଳୟରେ ଚାଲିଥିବା ନିଖିଳୋତ୍କଳ ଶ୍ରୀଅରବିନ୍ଦ ଯୁବଛାତ୍ର ଶିବିରରେ । ସେତେବେଳେ ତାଙ୍କର ଅନେକ ଉପାଦେୟ ଭାଷଣ ତଥା କିରୀଟ ଯୋଷୀ, ଅରିନ୍ଦମ ବସୁ ପ୍ରଭୃତିଙ୍କ ଇଂରାଜୀ ଭାଷଣର ତାତ୍‌କାଳିକ ଅନୁବାଦ ଶୁଣି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ୧୯୭୮ରେ, ମୋତେ ତତ୍‌କାଳୀନ ସ୍କୁଲର ସମ୍ପାଦକ ବିପିନ୍‌ବାବୁ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ସର୍ଦ୍ଦାର ପଟେଲ ହଲ, ଭୁବନେଶ୍ୱରର ପିଲାଙ୍କୁ କେତେଗୁଡ଼ିଏ ଅନୌପଚାରିକ ସମ୍ଭାଷଣସଂସ୍କୃତ ଓ ଅନ୍ୟାନ୍ୟ ବିଷୟ ପଢ଼ାଇବା ପାଇଁ ଆମନ୍ତ୍ରଣ କରିଥିଲେ । ମୋତେ କହିଥିଲେ, ଚିତ୍ତଭାଇ ଏଠାରେ ନିର୍ଦ୍ଦେଶକ ଅଛନ୍ତି । ତେଣୁ ମୁଁ ସେ ମହୋଦୟଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିବା ଲୋଭରେ ସେହିଠାରେ ଏମ୍.ଏ ପରୀକ୍ଷା ଦେବାପର୍ଯ୍ୟନ୍ତ କାମ କରିଥିଲି । ଯେତେବେଳେ ମୁଁ ସ୍କୁଲକୁ ଯାଏ ପ୍ରଥମେ ଚିତ୍ତଭାଇଙ୍କୁ ଭେଟିବାକୁ ଯାଏ । ତାଙ୍କର ସେ ନିରାଡମ୍ବର ସ୍ୱଚ୍ଛ ପ୍ରକୋଷ୍ଠରେ ସେ ବସି ମାତୃରଚନାବଳୀ ଅନୁବାଦ କରି ଚାଲିଥାନ୍ତି । ତାଙ୍କ ସହ ପ୍ରତ୍ୟେକ ଥର

ଦେଖାରେ ମୁଁ ଖୁବ୍ ଗୌରାବାନ୍ୱିତ ମନେକରିଥାଏ । ବ୍ୟକ୍ତି ମର୍ଯ୍ୟାଦା ଓ ପ୍ରତ୍ୟେକ ବ୍ୟକ୍ତି ପ୍ରତି ସମୁଚିତ ସମ୍ମାନ ଭାବ ମୁଁ ତାଙ୍କଠାରୁ ବୁଝିଛି । ଜ୍ଞାନର ଭାରରେ ଥିବା ତାଙ୍କର ବିନୟ ବଚନ ଓ ଯେ କୌଣସି ବ୍ୟକ୍ତି ପ୍ରତି ଏକ ଭିନ୍ନ ତଥା ନୂତନ ଦୃଷ୍ଟିକୋଣ ମୋତେ ବିଶେଷ ଭାବେ ଅଭିଭୂତ କରି ଆସିଛି । ସର୍ବୋପରି ଜଣେ ଦରଦୀ ବନ୍ଧୁ ଭାବେ ସେ ଦେଶ କାଳ ପାତ୍ରର ଉର୍ଦ୍ଧ୍ୱରେ । ସେଥିପାଇଁ ସେ ଆମର ଏକାଦି କ୍ରମେ ବନ୍ଧୁ ଓ ଗୁରୁ ଭାବେ ଉଭାହୋଇଛନ୍ତି । କେବଳ ମୋର ନୁହେଁ ଓଡ଼ିଶାର ଅଗଣିତ ଛାତ୍ର, ଶିକ୍ଷକ ଓ ଅଧ୍ୟାତ୍ମବାଦୀ ବନ୍ଧୁଗଣ ତାଙ୍କ ପ୍ରତି ଏକ ଅଦ୍ଭୁତ ଆକର୍ଷଣ ଦ୍ୱାରା ଆକର୍ଷିତ । ସମସ୍ତଙ୍କର ସେ ଚିତ୍ତଭାଇ । ଆମ ସମୟରେ ଏଭଳି ଜଣେ ବ୍ୟକ୍ତି ଆମ ସହ ହସି ବସି ଆମକୁ ଯେଉଁ ମହାର୍ଘ ତତ୍ତ୍ୱମାନ ଅବଳୀଳାକ୍ରମେ ପ୍ରଦାନ କରୁଛନ୍ତି ସେ କଥା ଭାବିଲେ ବେଳେ ବେଳେ ଆଶ୍ଚର୍ଯ୍ୟ ହୋଇଥାଉ । ଚିତ୍ତଭାଇ ଯେତେଯାହା ହେଲେ ବି ସେ ଆମ ଚିତ୍ତଭାଇ । ବାସ୍ ସେତିକି ।।

*ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର*
*ସଂସ୍କୃତ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ ପରିସର ବାଣୀ ବିହାର,*
*ଭୁବନେଶ୍ୱର-୪*

## ଜହ୍ନମାମୁଙ୍କ ପରି ଆମ ସମସ୍ତଙ୍କ ଚିତ୍ତଭାଇ

୧୯୮୯ ମସିହାରେ ଚିତ୍ତଭାଇ ଯେତେବେଳେ ସାରଳା ପୁରସ୍କାର ପାଉଛନ୍ତି ବୋଲି ଘୋଷିତ ହେଲା, ତାଙ୍କର ଅଜସ୍ର ପାଠକପାଠିକା ତଥା ତାଙ୍କ ସହିତ ବିଭିନ୍ନ ସୂତ୍ରରେ ବନ୍ଧା ପଡ଼ିଥିବା ଶୁଭେଚ୍ଛୁମାନେ ନିଶ୍ଚୟ ଖୁସି ହୋଇଥିଲେ । ସବୁଠାରୁ ବେଶି ଖୁସି ହେଉଥିଲା ମୋର ସାନପୁଅ । ପୁରସ୍କାର ବାବଦକୁ କୋଡ଼ିଏ ହଜାର ଟଙ୍କା ଚିତ୍ତଭାଇ ପାଇବେ ବୋଲି ଜାଣି ମୋ ପୁଅ ଆଶ୍ୱସ୍ତ ହୋଇ କହିଥିଲା, ଯାହା ହେଉ, ଏଥରକ ଚିତ୍ତଭାଇ ଗୋଟେ ଲୁନା କିଣି ପାରିବେ । ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ସହିତ ଅନ୍ତରଂଗ ଭାବରେ ସଂପୃକ୍ତ ହୋଇଥିବାରୁ 'ଚିତ୍ତଭାଇ'ଙ୍କ ସହିତ ଆମ ପରିବାରର ସମ୍ପର୍କ ଖୁବ୍ ଶ୍ରଦ୍ଧାପୂର୍ଣ୍ଣ । କେବେ କେବେ ଚିତ୍ତଭାଇ ଆମ ଘରକୁ

ଚାଲି ଚାଲି ଆସି ପହଞ୍ଚି ଯାଆନ୍ତି ଆମ ଶିକ୍ଷାକେନ୍ଦ୍ରର ଅନ୍ୟ ବନ୍ଧୁମାନଙ୍କ ସହିତ । ରବୀନ୍ଦ୍ର ସଂଗୀତ ଗାଆନ୍ତି । ଘରେ ଯାହା ଥାଏ ଖୁସିରେ ଖାଆନ୍ତି । ଚାଲି ଚାଲି ଘରକୁ ଫେରନ୍ତି । ତାଙ୍କ ହାତରେ ବ୍ୟାଗ୍ ଖଣ୍ଡେ ଥାଏ । ଘରକୁ ଗଲାବେଳେ ବାଟରୁ ପରିବା ନେଇଯିବାର ଅଛି ବୋଲି କହନ୍ତି । ତାଙ୍କୁ ସ୍କୁଟର୍‌ରେ ନେଇ ଛାଡ଼ି ଦେବାକୁ ମୋ ସ୍ୱାମୀ ଅନୁରୋଧ କଲେ ସେ ରୋକ୍‌ଠୋକ୍ ଭାବରେ ମନା କରିଦିଅନ୍ତି । ମୋ ପୁଅ ଦୁହେଁ ଭାରି ଭଲ ପାଆନ୍ତି ଚିତ୍ତଭାଇଙ୍କୁ । ଅନ୍ତରଂଗବନ୍ଧୁ ଭଳି ପିଲାଦିନରୁ ନିଜ ମନକଥା ତାଙ୍କ ଆଗରେ ପ୍ରକାଶ କରନ୍ତି । କୌଣସି ପ୍ରକାର ସମସ୍ୟା ଉପୁଜିଲେ ଆମେ ଜାଣିବା ପୂର୍ବରୁ ଚିତ୍ତଭାଇଙ୍କ ସହିତ ପରାମର୍ଶ କରି ତା'ର ସମାଧାନ କରିଦିଅନ୍ତି । ତେଣୁ ପ୍ରିୟବନ୍ଧୁଙ୍କର ପୁରସ୍କାର ପ୍ରାପ୍ତିର ଗୌରବରେ ଖୁସି ହେବା ସହିତ ବିଚରା ଚିତ୍ତଭାଇଙ୍କର ଏଥର ଲୁନାଟିଏ କିଣିବା ପାଇଁ ଅସୁବିଧା ହେବନାହିଁ ବୋଲି ମୋ ପୁଅର ଖୁସି ହେବାରେ କିଛି ବିଚିତ୍ରତା ନ ଥିଲା । ଖଦଡ଼ ଧୋତି ପଞ୍ଜାବୀ ପରିହିତ ଅତି ସାଧାରଣ ମନେ ହେଉଥିବା, ସେମାନଙ୍କ ସହିତ ଅତି ସହଜ ସରଳ ଭାବରେ ମିଶିପାରୁ ଥିବା ବ୍ୟକ୍ତି ଜଣଙ୍କର ଅସାଧାରଣତ୍ୱ ବିଷୟରେ କଳ୍ପନା କରିପାରିବାର ସାମର୍ଥ୍ୟ ସପ୍ତମ ଶ୍ରେଣୀରେ ପାଠ ପଢୁଥିବା ତା'ର ଶିଶୁ ମନଟିରେ ଆସିବ କେଉଁଠୁ ? ଦିନେ ଆମେ ଆମ ପୁଅ ଦୁହିଁଙ୍କୁ ନେଇଯାଇଥିଲୁ ଚିତ୍ତଭାଇଙ୍କର ବାପୁଜୀନଗରସ୍ଥିତ ବାସଗୃହକୁ । ବଗିଚାରେ କାମ କରୁଥିବା ଚିତ୍ତଭାଇଙ୍କୁ ସେମାନେ ଦେଖିଲେ; ଦେଖିଲେ ତାଙ୍କର ଦ୍ୱିତଳ ଅଟ୍ଟାଳିକା ଓ ସୁସମୃଦ୍ଧ ଲାଇବ୍ରେରୀ; ଗ୍ୟାରେଜ୍‌ରେ ଥିବା ମୋଟରକାର୍ ବି ଦେଖିଲେ । ଏତେ ସବୁ ଥାଇ ମଧ୍ୟ ଜଣେ ଲୋକ ଏମିତି ସାଧାସିଧା ଭାବରେ ଚଳନ୍ତି ଯେ ! ସିଏ ସେମିତି । ବେଶପୋଷାକ ତଥା ଚଳଣିର ନିରାଡମ୍ବରତା ତାଙ୍କ ବ୍ୟକ୍ତିତ୍ୱର ଔଜ୍ଜ୍ୱଲ୍ୟକୁ ନ୍ୟୁନ କରିପାରିନାହିଁ । ଚିତ୍ତଭାଇ ଦେଶ ବିଦେଶ ବୁଲିବାକୁ ଯାଆନ୍ତି ଶୁଣି କୌତୂହଳରେ ଥରେ ପୁଅ ପଚାରିଲା, ''ଏମିତି ଧୋତି ପଞ୍ଜାବୀ ପିନ୍ଧି ସବୁଆଡ଼େ ଯାଆନ୍ତି ? ଶୀତ ଦିନରେ ଆପଣଙ୍କୁ ଥଣ୍ଡା ଲାଗେ ନାହିଁ ?'' ଯାର ଉତ୍ତରରେ ଚିତ୍ତଭାଇ ତାଙ୍କ ଆଲବମ୍‌ରୁ ତାଙ୍କର ପ୍ୟାଣ୍ଟ, କୋଟ୍‌ପିନ୍ଧା ଫଟୋ ଦେଖାଇଥିଲେ । ଆବଶ୍ୟକ ମନେ କଲେ, ଜରୁରୀ ମନେ ହେଲେ ଅନ୍ୟପ୍ରକାର ପୋଷାକ ସେ ପିନ୍ଧି ଥାଆନ୍ତି । କିନ୍ତୁ ଧୋତି ପଞ୍ଜାବୀରେ ହିଁ ସେ ସ୍ୱାଚ୍ଛନ୍ଦ୍ୟ ଅନୁଭବ କରନ୍ତି ।

ସମସ୍ତଙ୍କର ସେ ଚିତ୍ତଭାଇ । ଆମର ଗୁରୁଜନସ୍ଥାନୀୟ ବୟସ୍କ ବ୍ୟକ୍ତିମାନେ ତାଙ୍କୁ 'ଚିତ୍ତଭାଇ' ଡାକନ୍ତି । ଆମ ପିଲାମାନେ ବି ତାଙ୍କୁ 'ଚିତ୍ତଭାଇ' ଡାକୁଛନ୍ତି ।

ଈଶ୍ୱର ଆମ ସମସ୍ତଙ୍କର 'ଚିତ୍ତଭାଇ'ଙ୍କୁ ଦୀର୍ଘଜୀବୀ କରନ୍ତୁ । ଆମ ପିଲାମାନଙ୍କର ପିଲାମାନେ ବି ତାଙ୍କୁ 'ଚିତ୍ତଭାଇ' ବୋଲି ନିର୍ଦ୍ୱନ୍ଦ୍ୱରେ ଡାକିବେ । 'ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ' ଅପେକ୍ଷା 'ଚିତ୍ତଭାଇ' ନାମଟିର ନିଶ୍ଚୟ ଅଧିକ ଗୁରୁତ୍ୱ ବିଶେଷତ୍ୱ ତଥା ସାର୍ଥକତା ରହିଛି । 'ଜହ୍ନମାମୁ' ଯେମିତି ସମସ୍ତଙ୍କର ମାମୁ, 'ଚିତ୍ତଭାଇ' ସେମିତି ସମସ୍ତଙ୍କର ଚିତ୍ତଭାଇ । ତାଙ୍କ ପରି ବ୍ୟକ୍ତିଟିଏ ସହଜରେ ଦୃଷ୍ଟିଗୋଚର ହୋଇ ନ ଥାଏ । ସମ୍ବୋଧନରେ 'ଜହ୍ନମାମୁ' ପରି ହେଲେ ମଧ ଜ୍ଞାନର ପ୍ରଚଣ୍ଡ ଦୀପ୍ତିରେ ସେ ସୂର୍ଯ୍ୟ ପରି ଉଜ୍ଜ୍ୱଳ ଏବଂ ପ୍ରଖର । ତାଙ୍କ ବ୍ୟକ୍ତିତ୍ୱର ପ୍ରଖରତାକୁ ଭୟ କରନ୍ତି ଅନେକ । ଭୟ କରନ୍ତି ସାମ୍ନା କରିବାକୁ ତାଙ୍କର ଅନ୍ତର୍ଭେଦୀ ଦୃଷ୍ଟିକୁ । କାହାରିକୁ ଭୟ କରନ୍ତି ନାହିଁ ବୋଲି ଅନାୟାସରେ ଭର୍ତ୍ସନା କରିପାରନ୍ତି । ତାଙ୍କର ରଚନାରେ, ବକ୍ତବ୍ୟରେ ଯେଉଁ ତୀବ୍ର କଟାକ୍ଷ ଭରି ରହିଥାଏ, ଗତାନୁଗତିକତା ମଧ୍ୟରେ ନିଜକୁ ଆବଦ୍ଧ ରଖି ନିଜ ସ୍ୱାର୍ଥର ପସରାଟିକୁ ପରିପୂର୍ଣ୍ଣ କରି ରଖିବା ପାଇଁ ଅନବରତ ନିଷ୍ଠାପର ଭାବରେ ଲାଗି ରହିଥିବା ମଣିଷଙ୍କ ପକ୍ଷରେ ହଜମ କରିବା ଖୁବ୍ କଷ୍ଟକର ହୋଇଥାଏ । କିନ୍ତୁ ସହଜ, ସରଳ ମଣିଷମାନଙ୍କ ପାଇଁ ଚିତ୍ତଭାଇ ଖୁବ୍ ଆପଣାର ମଣିଷଟିଏ ।

ପ୍ରଚଣ୍ଡ ପ୍ରତିଭାଧର ଏହି ମହାନ୍ ବ୍ୟକ୍ତିତ୍ୱଙ୍କର ଅନନ୍ୟ ସାଧାରଣ ପ୍ରତିଭାର ପରିଚୟ ଓଡ଼ିଶାର ଅଗଣିତ ଲୋକ ଜାଣନ୍ତି, ଦେଶ ବିଦେଶକୁ ମଧ ତାଙ୍କର ଖ୍ୟାତି ପରିବ୍ୟାପ୍ତ । ସେହି ବିଖ୍ୟାତ ସାହିତ୍ୟିକ ଚିତ୍ତରଂଜନ ଦାସ, ବାଗ୍ମୀ ଚିତ୍ତରଂଜନ ଦାସ, ଶିକ୍ଷାବିତ୍ ଚିତ୍ତରଂଜନ ଦାସଙ୍କ ବିଷୟରେ ମୋର ଜ୍ଞାନ ହୁଏତ ଖୁବ୍ ସୀମିତ । ତେଣୁ ସେ ସମ୍ପର୍କରେ ମୁଁ କିଛି କହିବାର ଆସ୍ପର୍ଦ୍ଧା କରିବି ନାହିଁ । ପିଲାମାନଙ୍କର ସହିତ ତାଙ୍କର ବନ୍ଧୁତ୍ୱର କଥା ହିଁ କହିବି । ନିଜ ଅନୁଭବରୁ କହିବି । ମୋ ପୁଅ ସନ୍ଦୀପନ୍ ଏବଂ ସୌରଦୀପ୍ତ ଚିତ୍ତଭାଇଙ୍କୁ ଜଣେ ଅନ୍ତରଂଗ ବନ୍ଧୁ ଭାବରେ ଗ୍ରହଣ କରିନେଇଥିଲେ । ତେଣୁ କେବେ କେବେ ସେମାନେ ଚିତ୍ତଭାଇଙ୍କ ପାଖକୁ ଯାଉଥିଲେ କୌଣସି ବିଷୟରେ ପରାମର୍ଶ କରିବା ଆବଶ୍ୟକ ମନେ ହେଲେ । ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷାର ରେଜଲ୍ଟ ବାହାରିବା ପରେ ସନ୍ଦୀପନ୍ (ବାପୁନ୍) ତା'ର ବନ୍ଧୁମାନଙ୍କ ସହିତ ବି.ଜେ.ବି କଲେଜରୁ ଆଡ୍‌ମିଶନ୍ ଫର୍ମ ଆଣି ଫେରୁଥିଲା । ସ୍କୁଲ୍ ଜୀବନ ପରେ ଆଉ ଗୋଟେ ପ୍ରସ୍ତ ଜୀବନର ଅୟମାରମ୍ଭ ହେବ । ପିଲାମାନଙ୍କ ଆଖିରେ କେତେ କେତେ ସ୍ୱପ୍ନ ଆଉ ସମ୍ଭାବନାର ପରିକଳ୍ପନା । ଚିତ୍ତଭାଇଙ୍କର ବାପୁଜୀନଗର ଘରେ 'ବାପୁନ୍' ତା'ର ବନ୍ଧୁମାନଙ୍କ ସହିତ ପହଞ୍ଚି ଯାଇଥିଲା । କୁଶଳ ସମ୍ଭାଷଣ ପରେ ଚିତ୍ତଭାଇ ପିଲାମାନଙ୍କୁ

ସେମାନଙ୍କର ଜୀବନର ଲକ୍ଷ୍ୟ ବିଷୟରେ ପଚାରିଥିଲେ । ସେମାନେ ସମସ୍ତେ ଥିଲେ ମେଧାବୀ ଛାତ୍ର । ତେଣୁ ଭବିଷ୍ୟତରେ ଯେ ସେମାନେ ଡାକ୍ତର, ଇଞ୍ଜିନିୟର, ଆଇ.ଏ.ଏସ୍ ଅଫିସର ଇତ୍ୟାଦି ହେବାକୁ ଚାହିଁବେ ଏଥିରେ କୌଣସି ସନ୍ଦେହ ନଥିଲା । ଦୁଇ ତିନି ଜଣଙ୍କ ପାଖରୁ ସେ ପ୍ରକାର ଗତାନୁଗତିକ ଉତ୍ତର ପାଇବା ପରେ ଚିତ୍ତଭାଇ କହିଥିଲେ, ''ପ୍ରତିବର୍ଷ ହଜାର ହଜାର ଡାକ୍ତର, ଇଞ୍ଜିନିୟର, ଶହ ଶହ ଅଫିସର ବାହାରୁଛନ୍ତି । ସେମାନଙ୍କ ଦ୍ୱାରା ନୂଆ କଥା କିଛି ହେଉଥିବା ଭଳି ମନେ ହେଉନି । ନିଜକୁ ସେମାନଙ୍କ ମଧ୍ୟରେ ସାମିଲ୍ କରି ତାଙ୍କର ସଂଖ୍ୟା ବଢ଼ାଇବା ବ୍ୟତୀତ ଆଉ କିଛି କ'ଣ କରି ପାରିବନି ତୁମେମାନେ ? ତୁମମାନଙ୍କଠାରୁ ଏ ପୃଥିବୀ ନୂଆ କିଛି ଆଶା କରୁଛି । ସେ ସମ୍ପର୍କରେ କିଛି ଭାବୁ ନ ତ କେହି ।''

ସେଦିନ ସେଇ ପିଲାମାନଙ୍କ ମଧ୍ୟରୁ ଚିତ୍ତଭାଇଙ୍କ କଥାଟିର ଗୁରୁତ୍ୱ କେତେ ପରିମାଣରେ କିଏ ଅନୁଭବ କରିଥିଲେ ମୋତେ ଜଣାନାହିଁ । ସନ୍ଦୀପନ୍ କିନ୍ତୁ ସେ ବିଷୟରେ ଭାବିଥିଲା ନିଶ୍ଚୟ । କିଛିବର୍ଷ ପରେ ଅବଶ୍ୟ ଆମେ ଜାଣିବାକୁ ପାଇଲୁ ସେକଥା । ବି.ଜେ.ବି କଲେଜରୁ ପ୍ଲସ୍ ଟୁ ପାଶ୍ କରିବା ପରେ କାନ୍‌ପୁର ଆଇ.ଆଇ.ଟିରେ ପଢ଼ିବା ପାଇଁ ଯାଇଥିଲା ସନ୍ଦୀପନ୍ । ସେଇଠି ପଢୁଥିବା ବେଳେ ସେ ତା'ର ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ କିଛିଟା ଧାରଣା ଆମକୁ ଦେଇଥିଲା । ସେ କହିଥିଲା, ଏଠାରୁ ପାଶ କରିବା ପରେ କୋଉଠି ଗୋଟେ ଚାକିରି କରି ବହୁତ୍ ଟଙ୍କା ରୋଜଗାର କରିବି ବୋଲି ମୋଠାରୁ ଆଶା କରିବ ନାହିଁ । ମୁଁ କେବଳ ସାରା ଜୀବନ ଛାତ୍ର ହୋଇ ରହିବାକୁ ଚାହେଁ । ମୁଁ ଜୀବନସାରା ପଢ଼ିବି ଆଉ ଜାଣିବି ।'' ତା'ର ଏଭଳି ନିଷ୍ପତ୍ତି ଆମକୁ ଆଶ୍ଚର୍ଯ୍ୟ କରି ନ ଥିଲା । ସାଦରେ ଗ୍ରହଣ କରିନେଇଥିଲୁ ତା'ର ଇଚ୍ଛାକୁ । ଯୋଉଥିରେ ସେ ଆନନ୍ଦ ପାଇବ– ଯୋଉ ପ୍ରକାର କାର୍ଯ୍ୟ ତାକୁ ଆତ୍ମ ସନ୍ତୋଷ ପ୍ରଦାନ କରିବ ସେ ତାହା ହିଁ କରୁ ବୋଲି ଆମେ ଚାହୁଁଥିଲୁ । କାନ୍‌ପୁର ଆଇ.ଆଇ.ଟି.ରୁ ଇଣ୍ଟିଗ୍ରେଟେଡ୍ ଫିଜିକ୍‌ସର ପାଞ୍ଚବର୍ଷିଆ ପାଠ୍ୟକ୍ରମ ଶେଷ କରିବା ପରେ ସନ୍ଦୀପନ୍ ସ୍ୱିଡ଼େନର ଲୁଣ୍ଡ୍ ବିଶ୍ୱବିଦ୍ୟାଳୟରେ ବର୍ତ୍ତମାନ କ୍ୱାଣ୍ଟମ୍ ଫିଜିକ୍‌ସ୍‌ରେ ଗବେଷକ ଛାତ୍ର ଭାବରେ ଯୋଗ ଦେଇଛି । କିଛି ଗୋଟାଏ ନୂଆ କଥା ଆବିଷ୍କାର ବା ଉଦ୍ଭାବନ କରି ପୃଥିବୀକୁ ଚମକାଇ ଦେବାର କି ବାପା ମାଆ, ବନ୍ଧୁ ପରିଜନ, ଦେଶବାସୀଙ୍କୁ ଧନ୍ୟ କରିବାର ମନୋବୃତ୍ତି ନେଇ ନୁହେଁ– ଜାଣିବାର ଇଚ୍ଛା ନେଇ ହିଁ ନିଜ କାମରେ ସେ ନିମଗ୍ନ ହୋଇ ରହେ । ସେହି ବିଷୟଟିକୁ ସେ ଭଲପାଏ ବୋଲି ତାକୁଇ ନେଇ

କାମ କରିବାକୁ ଆଗ୍ରହୀ ହୁଏ । ବିଶ୍ୱବିଦ୍ୟାଳୟ ତରଫରୁ ତାକୁ ବିଭିନ୍ନ ଦେଶକୁ ପଠାଯାଏ ସେମିନାର, କନ୍‌ଫରେନ୍‌ସ ଇତ୍ୟାଦିରେ ଯୋଗ ଦେବାକୁ । ଯେଉଁ ଦେଶକୁ ଯାଏ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ସରିବା ପରେ ଦୋକାନ ବଜାରବୁଲି ଜିନିଷପତ୍ର କିଣାବିକା କରିବାକୁ ସେ ପସନ୍ଦ କରେ ନାହିଁ । ଗବେଷକ ପର୍ଯ୍ୟଟକ ଭାବରେ ବୁଲାବୁଲି କରି ସେ ଦେଶର ଇତିହାସ ଭୂଗୋଳ ଏବଂ ସଂସ୍କୃତି ସମ୍ପର୍କରେ ତଥ୍ୟ ସଂଗ୍ରହ କରେ । ଫଟୋ ଉଠାଏ । 'ସରଳ ଜୀବନ- ଉଚ୍ଚ ଚିନ୍ତା'ର ଜ୍ୟୋତିଶିଖାଟିକୁ ଆମ ସନ୍ଦୀପନ୍ ମଧରେ ସଂଦୀପିତ କରିଦେଇଥିବା ହେତୁ ଚିଉଭାଇଙ୍କ ନିକଟରେ ଆମେ ଚିର କୃତଜ୍ଞ ରହିବୁ ।

ପିଲାମାନଙ୍କୁ ନେଇ ଆଉ ଏକ ଘଟଣା ଚିଉଭାଇଙ୍କ ସହିତ । ଅଗ୍ରଗାମୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଆନୁକୂଲ୍ୟରେ କାଶୀପୁରଠାରେ ବିଭିନ୍ନ ସ୍କୁଲର ପିଲାଙ୍କୁ ନେଇ କିଶୋର ଲେଖକ କର୍ମଶାଳାର ଆୟୋଜନ କରାଯାଇଥାଏ । ଆମ ବିଦ୍ୟାଳୟର ଦଶଜଣ ଛାତ୍ରଛାତ୍ରୀଙ୍କ ସହିତ ଚିଉଭାଇ, ରବିଭାଇ ଓ ମୁଁ ଯାଇଥାଉ । ସାରା ରାତି ବସ୍‌ରେ ବସି ବସି ଯିବା ମୋ ପାଇଁ ଖୁବ୍ କ୍ଲାନ୍ତିକର ମନେ ହୋଇଥିଲା । କିନ୍ତୁ ଚିଉଭାଇଙ୍କୁ ଦେଖିଲେ ମନେ ହେଉ ନ ଥିଲା ବୟସର କୌଣସି ପ୍ରଭାବ ପଡ଼ିଛି ତାଙ୍କ ଉପରେ । ଷଷ୍ଠ, ସପ୍ତମ ଶ୍ରେଣୀର ପିଲାମାନଙ୍କ ମେଳରେ ସେ ମଧ ସମବୟସ୍କ ବନ୍ଧୁ ଭଳି ମିଶି ଯାଉଥାଆନ୍ତି । ରାୟଗଡ଼ାରେ ଆମେ ବସ୍‌ରୁ ବଡ଼ି ଭୋର୍‌ରୁ ଓହ୍ଲାଇଲୁ । ଆମ ସହିତ ଢେଙ୍କାନାଳ ଇଣ୍ଟିଗ୍ରାଲ୍ ସ୍କୁଲ୍‌ର ଦଶଜଣ ଛାତ୍ରଛାତ୍ରୀ ଏବଂ ସୁସାହିତ୍ୟିକ ଅଧାପକ ଜୟନ୍ତ କୁମାର ବିଶ୍ୱାଳ, ତାଙ୍କର ଧର୍ମପତ୍ନୀ ନେଲୀ ମଧ ଥାଆନ୍ତି । ଅଗ୍ରଗାମୀରୁ ଜିପ୍ ଆସିଲେ ଆମେ କାଶୀପୁର ଯିବୁ । ପ୍ରଥମେ ଯେଉଁ ଜିପ୍‌ଟି ଆସିଲା ସେଥିରେ ଚିଉଭାଇ, ଜୟନ୍ତ ଭାଇ ଓ ଢେଙ୍କାନାଳ ସ୍କୁଲ୍‌ର ପିଲାମାନେ ବସିଗଲେ । ଆମ ସମସ୍ତଙ୍କର କିଛି ଜିନିଷପତ୍ର ମଧ ସେଥିରେ ଲଦା ହେଲା । ଆଉ ଗୋଟିଏ ଜିପ୍ ଖୁବ୍ ଶୀଘ୍ର ଆସୁଛି ବୋଲି ଅଗ୍ରଗାମୀର ରମେଶ ଭାଇ କହିବାରୁ ଚିଉଭାଇଙ୍କୁ ନେଇ ପ୍ରଥମ ଜିପ୍‌ଟି କାଶୀପୁର ଅଭିମୁଖେ ଚାଲିଗଲା । ଅନ୍ୟ ଜିପ୍‌ଟି ଆସିବାରେ ସାମାନ୍ୟ ବିଳମ୍ବ ହୋଇଥିଲା । ରାୟଗଡ଼ାକୁ ଆମେ ବାହାରିବା ପୂର୍ବରୁ ଆମ ବିଦ୍ୟାଳୟର ଜଣେ ଛାତ୍ରୀ ଅନୁରୋଧ କଲା ରାୟଗଡ଼ାସ୍ଥିତ ଇଣ୍ଟିଗ୍ରାଲ୍ ସ୍କୁଲ ହୋଇ ଯିବା ପାଇଁ । ଝିଅଟି ପ୍ରଥମେ ସେଇ ବିଦ୍ୟାଳୟରେ ଅଧୟନ କରୁଥିଲା । ତା'ର ପୂର୍ବତନ ବିଦ୍ୟାଳୟ ପ୍ରତି ଅନୁରାଗ ଆମକୁ ଭଲ ଲାଗିଥିଲା । ତା ସହିତ ଆମେ ନିଜେ ମଧ ଚାହିଁଥିଲୁ ଆମ କର୍ମଧାରା ସହିତ ସଂପୃକ୍ତ ଅନୁଷ୍ଠାନଟିକୁ ଦେଖିବାପାଇଁ । ଆମମାନଙ୍କୁ ଦେଖି ସେଠାକାର

ଅପାଭାଇମାନେ ଖୁବ୍ ଖୁସି ହୋଇଥିଲେ । ସେଇ ଝିଅଟି ମଧ୍ୟ ଉଚ୍ଛ୍ୱସିତ ଆନନ୍ଦରେ ତା'ର ପ୍ରିୟ ପରିଚିତ ପରିବେଶ ମଧ୍ୟରେ ଘୂରି ବୁଲିଥିଲା । ସେଠାରେ କିଛି ସମୟ ରହି ଆମେ ବାହାରିପଡ଼ିଲୁ କାଶୀପୁର । ରାୟଗଡ଼ା ସହର ପଛକୁ ରଖି ଆମେ ଜଙ୍ଗଲ ରାସ୍ତା ଦେଇ ଆଗେଇଲୁ । ରାଜ୍ୟ ରାଜଧାନୀର ଅଟ୍ଟାଳିକାଅଧ୍ୟୁଷିତ ପରିବେଶରୁ ଆସିଥିବା ଆମର ପିଲାମାନଙ୍କ ପାଇଁ ସେଇ ଯାତ୍ରାକାଳୀନ ଅନୁଭବ ଥିଲା ଅଦ୍ଭୁତ, ରୋମାଞ୍ଚକର । ଯୁଆଡ଼େ ଚାହିଁଲେ ଉଚ୍ଚା ଉଚ୍ଚା ପାହାଡ଼- ସବୁଜ ବନାନୀର ଅପରୂପ ସମ୍ଭାର । ପିଲାମାନଙ୍କ ଭାଷାରେ ସବୁଗୁଡ଼ାକ ଜାଗା 'ପିକ୍‌ନିକ୍ ସ୍ପଟ୍' ଭଳି ମନେ ହେଉଥିଲା । ସେସବୁ ଦେଖୁ ଦେଖୁ ଗୋପୀନାଥ ମହାନ୍ତିଙ୍କର 'ପରଜା' ଦହିର କେତେ ଧାଡ଼ି ମନେ ପଡୁଥିଲା ମୋର । ''ଏପାଖୁ ଚାଳିଶ ସେପାଖୁ ପଚାଶ ପାହାଡ଼ ଠେଲାଠେଲି ଧକ୍‌କା ଧକ୍‌କି ହୋଇ ମୁହାଁମୁହିଁ ଠିଆ ହୋଇଥାଆନ୍ତି, ସେହି 'ଧର୍ମଦୁଆର' ଘାଟିଠୁଁ ଉତ୍ତରକୁ କୋଣେ ଦୂରରେ ପଡ଼େ ଗୋଟିଏ ଛୋଟ ଗାଁ- 'ଶରଣ୍ଣୁ ପଂଦର', ଗୋଟିଏ ପାହାଡ଼ ଢ଼ାଲୁରେ ଠିକ୍ ଅଣ୍ଟାପାଖେ ।'' କୋଉଠି ଅଛ ସେ ଧର୍ମଦୁଆର ଘାଟି, କେଜାଣି ! ''ଅପା, ଟିକେ ପ୍ଲିଜ୍ ଗାଡ଼ି ରଖିବାକୁ କହନ୍ତୁ ।'' ପିଲାଟିଏ ଅଳି କଲା ପରି କହିଲା ।

''କ'ଣ, ବାହାରକୁ ଯିବ ?''

'ନାଇଁ ଅପା, ଝରଣାରେ ଟିକେ ଗୋଡ଼ ବୁଡ଼ାଇବୁ । ପ୍ଲିଜ୍ ଅପା ।'' ଅନ୍ୟ ପିଲାମାନେ କହିଲେ, ଅଗତ୍ୟା ଆମକୁ ଅଟକିବାକୁ ହେଲା । ସେଇ ଜାଗାରେ ରାସ୍ତାଟି ଗଡାଣିଆ ହୋଇ ପୁଣି ଉପରକୁ ଉଠିଛି । ଗଡାଣି ସ୍ଥାନରେ ଝରଣା ପାଣିର ସ୍ୱଚ୍ଛ ଧାର ରାସ୍ତା ଉପର ଦେଇ ବୋହି ଚାଲିଛି । ପିଲାମାନେ ଝପାଝପ୍ ହୋଇ ଜିପ୍‌ରୁ ଓହ୍ଲାଇ ଝରଣା ଆଡ଼କୁ ଧାଇଁଲେ । ପାଣିରେ ଚବର ଚବର ହୋଇ ଖେଳିଲେ । ବହୁତ କଷ୍ଟରେ ସେମାନଙ୍କୁ ପୁଣି ଜିପ୍‌କୁ ଅଣାଗଲା । ବାଟରେ ଏଭଳି ଯେଉଁଠି ଝରଣା ଦୃଶ୍ୟମାନ ହୁଏ, ପିଲାମାନେ ଜିଦ୍ କରନ୍ତି ଓହ୍ଲାଇବାକୁ । ଦ୍ୱିତୀୟଥର ପରେ ଆଉ ସେଭଳି କରିବାକୁ ଦିଆ ହୋଇ ନ ଥିଲା ସେମାନଙ୍କୁ । ସେପର୍ଯ୍ୟନ୍ତ କାହାରି ଦାନ୍ତଘଷା ହୋଇ ନ ଥାଏ କି ଜଳଖିଆ କରା ହୋଇ ନ ଥାଏ । ପ୍ରକୃତିର ଅପରୂପ ଦୃଶ୍ୟ ପିଲାମାନଙ୍କର ଭୋକ ଶୋଷ ଭୁଲାଇ ଦେଇଥାଏ ।

କାଶୀପୁରର 'ଅଗ୍ରଗାମୀ' ଅନୁଷ୍ଠାନରେ ଆମେ ପହଞ୍ଚିଲା ବେଳକୁ ଦିନ ପ୍ରାୟ ବାରଟା ହୋଇ ସାରିଥାଏ । ଜିପ୍‌ରୁ ଓହ୍ଲାଇବା ମାତ୍ରେ ମୋ ପାଇଁ ଏକ ଅକଳ୍ପନୀୟ ପରିସ୍ଥିତି ଅପେକ୍ଷା କରି ରହିଥିଲା । 'ଦୁର୍ବାସା' ରୂପରେ ଚିତ୍ତଭାଇ

ଠିଆ ହୋଇଥିଲେ । ମୋତେ ଦେଖିବା ମାତ୍ରେ ଯାହା ଇଚ୍ଛା ତାହା ବକି ଦେଇଗଲେ । ''ଏଠିକୁ ଫେସନ୍ ଦେଖେଇବା ପାଇଁ ଆସିଛ ? ଏବେ ଚାଲିଯାଅ ଏଠୁ । ଦରକାର ନାହିଁ ତମର ଏଠି ରହିବା । ସମୟଜ୍ଞାନ ନାହିଁ ତମର ? କେତେଟା ବାଜିଲାଣି ମାଲୁମ୍ ଅଛି ?''

ଲଜ୍ଜା ଆଉ ଅପମାନରେ ମୋର କାନମୁଣ୍ଡା ଝାଇଁ ଝାଇଁ ହୋଇଗଲା । ଆଖିକୁ ଲୁହ ଚହଲି ଆସୁଥିଲା । ସେ ଯାବତ୍ ମୋ ଜୀବନରେ ଏଭଳି ଭର୍ତ୍ସନା କରି ଏମିତି ମୋତେ କେହି କହି ନ ଥିଲେ । ସେଭଳି କହିବାର ସୁଯୋଗ କାହାରି ନ ଥିଲା । କାରଣ ମୋ ବୋଉ ଭାଷାରେ ମୁଁ ଆମ ଘରର ସବୁଠାରୁ ଶାନ୍ତ, ସୁଧାର, ସୁନାଝିଅ ଥିଲି । ସେଇ ଅଚିହ୍ନା ପରିବେଶରେ ଅଜଣା ବ୍ୟକ୍ତିମାନଙ୍କ ଆଗରେ ଚିତ୍ତଭାଇ ମୋତେ ଯେମିତି ଭାବରେ ଭର୍ତ୍ସନା କଲେ, ପ୍ରଚଣ୍ଡ ଅଭିମାନରେ ମୋର ମଧ ସେଇ ମୁହୂର୍ତ୍ତରେ ଇଚ୍ଛା ହେଉଥିଲା, ଫେରିଯିବା ପାଇଁ ଯଦି କିଛି ବ୍ୟବସ୍ଥା ହୋଇପାରନ୍ତା, ସାଙ୍ଗେ ସାଙ୍ଗେ ଫେରିଯାଆନ୍ତି । ଭୁଲ୍ ବା ଠିକ୍ ଯାହା କହନ୍ତୁ- ଗୁରୁଜନଙ୍କ ମୁହଁ ଉପରେ କିଛି କହିବାର ଅଭ୍ୟାସ ମୋର ନାହିଁ । ତେଣୁ ନୀରବରେ ଚିତ୍ତଭାଇଙ୍କ ଗାଳି ଶୁଣିଗଲି । କାହିଁକି ଚିତ୍ତଭାଇ ମୋ ଉପରେ ବିରକ୍ତ ହେଲେ ଜାଣିବାକୁ ଚାହିଁଲି । ଚିତ୍ତଭାଉ ସେ ପର୍ଯ୍ୟନ୍ତ ଦାନ୍ତ ଘଷି ନ ଥିଲେ କି ଗାଧୁଆ ପାଧୁଆ କରି ନ ଥିଲେ । ତାଙ୍କର ଜିନିଷପତ୍ର ଥିବା ଆଟାଚିଟି ଆମ ଜିପ୍‌ରେ ରହିଯାଇଥିଲା । ଆମ ଜିପ୍‌ରୁ ଜିନିଷପତ୍ର ବାହାର କଲା ପରେ ଦେଖାଗଲା ଚିତ୍ତଭାଇଙ୍କ ଆଟାଚିଟି ତା' ମଧରେ ନାହିଁ । ତା' ହେଲେ କୁଆଡ଼େ ଗଲା ସେଇଟା । ପୂର୍ବରୁ ଆସିଥିବା ଜିନିଷପତ୍ରକୁ ପୁଣିଥରେ ଦେଖାଗଲା । ଚିତ୍ତଭାଇଙ୍କ ଆଟାଚି ସେଇଠି ଥିଲା । ମୋ ମୁଣ୍ଡ ଉପରୁ ବୋଝ ଓହ୍ଲାଇଗଲା ଯେମିତି । ଅକାରଣରେ ଗାଳିଗୁଡ଼ାଏ ଖାଇଲି ସିନା ! ''ପିଲାଙ୍କୁ ନେଇ ଏତେ ଡେରି କରି ଆସିବା କ'ଣ ଠିକ୍ ହୋଇଛି ? ସେମାନେ ଏ ପର୍ଯ୍ୟନ୍ତ ଜଳଖିଆ ବି ଖାଇ ନଥିବେ । ଆମେ କେତେବେଳୁ ପହଞ୍ଚିଗଲୁଣି । ତୁମମାନଙ୍କ ପାଇଁ ଆମର ଚିନ୍ତା ହେବନି ?'' ଚିତ୍ତଭାଇଙ୍କ କଣ୍ଠ ଅପେକ୍ଷାକୃତ ନରମ ଶୁଭୁଥିଲା ଏବେ । ଉଦ୍‌ଗତ ହସକୁ ଚାପିଦେଇ ପିଲାମାନଙ୍କ ସହିତ ଆମର ରହଣିସ୍ଥାନ ଆଡ଼କୁ ଆଗେଇଲି । ହଲ୍ ଭଳି ଲମ୍ବା ରୁମ୍‌ଟିରେ ଝିଅମାନଙ୍କ ସହିତ ମୁଁ ଆଉ ନେଲୀ ରହିଲୁ । ଟିକେ ଦୂରରେ ଚିତ୍ତଭାଇ ରବିଭାଇ ଓ ଜୟନ୍ତଭାଇ ରହିଲେ ପୁଅମାନଙ୍କ ସହିତ । ବଡ଼ମାନଙ୍କ ପାଇଁ ଅବଶ୍ୟ ଅଗ୍ରଗାମୀର କର୍ମକର୍ତ୍ତାମାନେ ସ୍ୱତନ୍ତ୍ର ରୁମ୍‌ର ବ୍ୟବସ୍ଥା କରିଥିଲେ । କିନ୍ତୁ ଆମେ ଯେହେତୁ ପିଲାମାନଙ୍କ ସହିତ ଯାଇଥିଲୁ ।

ସେଇମାନଙ୍କ ସହିତ ରହିବା ଉଚିତ୍ ହେବ ଏବଂ ଆମକୁ ମଧ ଭଲ ଲାଗିବ ବୋଲି ଜଣାଇଦେଲୁ ।

ଗାଧୁଆ ପାଧୁଆ, ମଧ୍ୟାହ୍ନ ଭୋଜନ, ସାମାନ୍ୟ ବିଶ୍ରାମ ପରେ ସମସ୍ତେ ହଲ୍‌ରେ ଏକାଠି ହେଲୁ । ପ୍ରଥମେ ପରିଚୟ ପର୍ବ- ତା'ପରେ କର୍ମଶାଳାର କାର୍ଯ୍ୟକ୍ରମ ସମ୍ପର୍କରେ ମୋଟାମୋଟି ଧାରଣା ଦିଆଗଲା । ବିଭିନ୍ନ ସ୍କୁଲରୁ ପ୍ରାୟ ଚାଳିଶ ଜଣ ଛାତ୍ରଛାତ୍ରୀ ଆସିଥିଲେ । ଭୁବନେଶ୍ୱର ଓ ଢେଙ୍କାନାଳର ପିଲାମାନଙ୍କୁ ଛାଡ଼ିଦେଲେ ଅନ୍ୟମାନେ ସେହି ପାଖାପାଖି ଅଞ୍ଚଳର ପିଲା । ପାଞ୍ଚୋଟି ଦିନ ସେମାନେ ଏକାଠି ରହିବେ । ଏକାଠି ବସିବେ । ଏକାଠି ଖାଇବେ, ଛବି ଆଙ୍କିବେ, ଗୀତ ଗାଇବେ, ଗପ କବିତା ଲେଖିବେ, ଆଖପାଖରେ କେତେକ ଗାଆଁକୁ ଯିବେ ବୁଲିବା ପାଇଁ । ମୋଟ ଉପରେ ଗତାନୁଗତିକ ଜୀବନଧାରାରୁ କେତୋଟି ଦିନ ବାହାରି ଆସିବେ- କୃତ୍ରିମତାର ସମସ୍ତ ଆକର୍ଷଣକୁ ଏଡାଇ ଦେଇ ଅନୁପମ ପ୍ରକୃତିର ଅନ୍ତରଙ୍ଗ ସାନ୍ନିଧ୍ୟରେ କଟାଇବେ କେତୋଟି ଆନନ୍ଦମୟ ମୁହୂର୍ତ୍ତ । ସେଇ ଆନନ୍ଦମୟ ପରିବେଶ ମଧ୍ୟରେ ମୁକୁଳିତ ହେବ ସେମାନଙ୍କର ସୃଜନଶୀଳ ପ୍ରତିଭା ।

ପରିଚୟ ପର୍ବ ପରେ ଚିତ୍ତଭାଇ ଓ ରବିଭାଇ ରବୀନ୍ଦ୍ର ସଂଗୀତ ଗାଇଲେ । ଚିତ୍ତଭାଇଙ୍କ ନିର୍ଦ୍ଦେଶରେ ରବିଭାଇ ପିଲାମାନଙ୍କୁ 'ଭୁବନେ ଭୁବନେ ତୁମରି ଆଲୋକ'' ଗୀତଟି ଶିଖାଇଲେ । କଥାବାର୍ତ୍ତା, ଆଳାପ ଆଲୋଚନା ମଧ୍ୟରେ ସମୟ କେମିତି ବିତିଗଲା ଜଣାପଡ଼ିଲା ନାହିଁ । ପିଲାମାନଙ୍କୁ ପରସ୍ପର ସହିତ ସାଙ୍ଗ ହେବା ପାଇଁ ଚିତ୍ତଭାଇ ଉତ୍ସାହିତ କରୁଥାଆନ୍ତି । ଭୁବନେଶ୍ୱର ଓ ଢେଙ୍କାନାଳର ପିଲାମାନେ ପରସ୍ପର ମଧ୍ୟରେ ସାଙ୍ଗ ହେବା ପାଇଁ ବିଶେଷ ସମୟ ଲାଗି ନଥିଲା । କିନ୍ତୁ ସ୍ଥାନୀୟ ପିଲାମାନେ ଟିକେ ସଂକୁଚିତ ହୋଇ ରହୁଥିଲେ । ମିଶି ପାରୁ ନଥିଲେ କାହା ସହିତ । ସହରି ପିଲାମାନଙ୍କର ବେଶ ପୋଷାକ ବୋଧହୁଏ ବାଧକ ହେଉଥିଲା ଏଥିପାଇଁ । ପିଲାମାନଙ୍କୁ ଚିତ୍ତଭାଇଙ୍କର ନିର୍ଦ୍ଦେଶ ଥିଲା ମାତ୍ର ତିନିହଳ ପୋଷାକ ଆଣିବେ ସେମାନେ, ଅତି ସାଧାରଣ, ଘରପିନ୍ଧା, ପୁରୁଣା ପୋଷାକ । ପିଲାମାନେ ଚିତ୍ତଭାଇଙ୍କ ନିର୍ଦ୍ଦେଶ ଅମାନ୍ୟ କରିନଥିଲେ । କିନ୍ତୁ ସହରି ପିଲାମାନଙ୍କର ଘରପିନ୍ଧା ସାଧାରଣ ପୁରୁଣା ପୋଷାକ ମଧ ସ୍ଥାନୀୟ ପିଲାଙ୍କ ମନରେ ସଂକୋଚ ଭାବ ସୃଷ୍ଟି କରୁଥିଲା । ସେମାନଙ୍କର ଭାଷା ଉଚ୍ଚାରଣର ଅସ୍ୱାଚ୍ଛନ୍ଦ୍ୟ ମଧ ଅନ୍ୟ ଏକ କାରଣ ଥିଲା । ଆମେ ଯାହାକୁ 'ଶୁଦ୍ଧ ଓଡ଼ିଆ' କହୁ— ସେ ପିଲାମାନେ ସେଭଳି କଥାବାର୍ତ୍ତା କରିବାରେ ଅସମର୍ଥ୍ୟ ଥିଲେ ।

ସନ୍ଧ୍ୟା ହୋଇଆସିଲା । ଚିତ୍ତଭାଇ ସବୁ ପିଲାଙ୍କ ସହିତ ବାହାରକୁ ଆସିଲେ । କାଶୀପୁରର ସେଇ ପ୍ରଥମ ସନ୍ଧ୍ୟା ଆମ ସମସ୍ତଙ୍କ ସ୍ମୃତିରେ ଅବିସ୍ମରଣୀୟ ହୋଇରହିବ । ସୁଉଚ୍ଚ ପର୍ବତମାଳା ମଝିରେ ଅଗ୍ରଗାମୀର ଛୋଟିଆ ବସତି । ମେଘମାନେ ସବୁ ଏତେ ପାଖରେ ଯାଉଥାଆନ୍ତି ଯେ ଯେମିତି ହାତ ବଢ଼େଇଲେ ଭିଣାତୁଳା ପରି ମେଘରୁ ମେଞ୍ଚାଏ ହାତରେ ଧରିହେବ । ନୀଡ ଫେରନ୍ତା ପକ୍ଷୀମାନଙ୍କର ମିଶ୍ରରାଗରେ ପରିବେଶ ମୁଖରିତ ହୋଇଉଠୁଥାଏ । ଅଦୂରର ଝରଣାଟିର ଛନ୍ଦମୟ ଉପସ୍ଥିତି ମଧ୍ୟ ଆମମାନଙ୍କୁ ମୁଗ୍ଧ ପୁଲକିତ କରିବା ପାଇଁ କିଛି କମ୍ ନଥିଲା ।

ଜଳଖିଆ ଖାଇବା ପରେ ସନ୍ଧ୍ୟା ଅଧିବେଶନ ଆରମ୍ଭ ହେଲା । ନିଜ ଜୀବନର ସ୍ମରଣୀୟ କୌଣସି ଘଟଣା ବିଷୟରେ କେହି କେହି କହୁଥିଲେ । ବାପା ମାଆଙ୍କର ସ୍ନେହଶୀତଳ ନିର୍ଭୟ ଆଶ୍ରୟ ମଧ୍ୟରେ ରହୁଥିବା ପିଲାମାନଙ୍କ ଜୀବନର ଅବିସ୍ମରଣୀୟ ଘଟଣା କହିଲେ କୌଣସି ଦର୍ଶନୀୟ ସ୍ଥାନରେ ପରିଭ୍ରମଣ, କୌଣସି ପାରିବାରିକ ଉତ୍ସବ- ନଚେତ୍ ପରିବାର ବା ପରିଚିତ ପରିବେଶରେ କାହା ମୃତ୍ୟୁର ଦୁଃଖଦ ଘଟଣା । ଆମ ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲା ସ୍ଥାନୀୟ ଜଣେ ଆଦିବାସୀ ଛାତ୍ରର ରୋମାଞ୍ଚକର ବର୍ଣ୍ଣନା । ଘନ ଅନ୍ଧାର ରାତିରେ ସେ ଦିନେ କେମିତି ଏକା ଏକା ନିବିଡ଼ ଜଙ୍ଗଲ ମଧ୍ୟରେ ଅଭିଯାନ କରିଥିଲା ଜଣେ ଅସୁସ୍ଥ ଆତ୍ମୀୟଙ୍କ ପାଇଁ ଔଷଧର ସନ୍ଧାନରେ । ଚିତ୍ତଭାଇ ପିଲାଟିକୁ ଉତ୍ସାହିତ କରୁଥିଲେ ନିଜ ଭାଷାରେ ବର୍ଣ୍ଣନା କରିବା ପାଇଁ । ଯାହା ଅବୁଝା ରହୁଥିଲା ସେ ନିଜେ ବୁଝାଇ ଦେଉଥିଲେ ଖୁବ୍ ସୁନ୍ଦର ଭାବରେ ।

ସେଦିନ ରାତ୍ରି ଭୋଜନ ପରେ ଶୋଇବାକୁ ଯିବାପୂର୍ବରୁ ମନେ ପଡ଼ିଲା ମୋ ଦାୟିତ୍ୱରେ ଯେଉଁ ପିଲାମାନେ ଆସିଛନ୍ତି– ସେମାନଙ୍କର ଅଭିଭାବକମାନେ ଖୁବ୍ ବ୍ୟାକୁଳ ଭାବରେ ଅନୁରୋଧ କରିଥିଲେ, ''ଅପା, ଫୋନ୍ କରିବାର ସୁବିଧା ଥିଲେ ଦୟାକରି ଟିକେ ଫୋନ୍ କରି ଜଣାଇଦେବେ ଭଲରେ ପହଞ୍ଚିଲେ ଆଉ ପିଲାମାନେ ଠିକ୍ ଠାକ୍ ଅଛନ୍ତି ବୋଲି ।'' ମୁଁ ଦେଖିଥିଲି 'ଅଗ୍ରଗାମୀ' ଅଫିସ୍‌ରେ ଫୋନ୍ ଅଛି । 'ଅଗ୍ରଗାମୀ'ର ମୁଖ୍ୟ ଅଚ୍ୟୁତ ଭାଇଙ୍କ ଠାରୁ ଅନୁମତି ମଧ୍ୟ ଆଣିଥିଲି ଫୋନ୍ କରିବାକୁ । ପିଲାମାନଙ୍କୁ କହିଲି, ''ଚାଲ ମୋ ସାଙ୍ଗରେ, ଘରକୁ ଫୋନ୍ କରିବା ।'' ପିଲାମାନେ ଖୁସିରେ ବାହାରି ପଡ଼ିଲେ । ସେପ୍ଟେମ୍ବର ମାସର ମଧ୍ୟଭାଗ ହେଲେ ମଧ୍ୟ ଶୀତ ଶୀତ ଲାଗୁଥାଏ । ତାରାଭରା ଆକାଶ ତଳେ, ଝିଙ୍କାରିଙ୍କର ସମ୍ମିଳିତ ଝିଁ ଝିଁ ଐକତାନ ମଧ୍ୟରେ ରହସ୍ୟମୟ ଲାଗୁଥାଏ ଚାରିଆଡ଼ । କିଛିବାଟ

ଆସିଛୁ– ଦେଖିଲୁ ଚିଉଭାଇ ଠିଆ ହୋଇଛନ୍ତି କେତେଜଣଙ୍କ ଗହଣରେ । କ'ଣ ସବୁ ଆଲୋଚନା କରୁଥିଲେ ସେମାନେ ।

"କ'ଣ ପ୍ରବୀଣା ଅପା– କୁଆଡ଼େ ଚାଲିଲ ଦଳ ବଳ ନେଇ ?" ଚିଉଭାଇ ପଚାରିଲେ ।

"ଫୋନ୍ କରିବାକୁ । ମୁଁ କହିଲି ସହଜ କଣ୍ଠରେ ।"

"ଫୋନ୍ କରିବ ? କାହାକୁ ?" ଚିଉଭାଇ ପଚାରିଲେ ।

"ଆମେ ଆସିଲାବେଳେ ଅଭିଭାବକମାନେ ବହୁତ୍ କରି କହିଥିଲେ ଏଠି ପହଞ୍ଚିଲା ପରେ ସୁବିଧା ଥିଲେ ଫୋନ୍ କରି ଜଣାଇ ଦେବାକୁ ।"

"କ'ଣ ଜଣାଇବ ? କିଏ କ'ଣ ମରିଗଲା ନା କାହାକୁ ବାଘ ଖାଇଗଲା ?" ଚିଉଭାଇ କହିଲେ ।

ଛି ଛି- ଏମିତି କିଏ କହେ ? କାଶୀପୁରରେ ହଇଜା ଲାଗିଛି ବୋଲି ଖବର କାଗଜରେ ବାହାରିଥିଲା ତ, ବାପା ମାଆମାନେ ବ୍ୟସ୍ତ ହେଉଥିବେ ।"

"ହଇଜାରେ ଆମ ଭିତରୁ କିଏ ମରିଗଲା ? କୋଉ ଜରୁରୀ ଖବର ଦେବାକୁ ଅଛି ? ଯାଅ ଯାଅ, ସେ ବାପାମାଆଙ୍କ କବଳରୁ ଦି' ଚାରିଦିନ ଶାନ୍ତିରେ ରହନ୍ତୁ ଏଠି ପିଲାଏ ।" ଚିଉଭାଇ କହିଲେ ଗମ୍ଭୀର ହୋଇ ।

ଭାରି ଖରାପ ଲାଗିଲା ମୋତେ । ମୋ ମନୋଭାବ ବୁଝିଲା ପରି ଜଣେ ପିଲା ପଚାରିଲା ।

"ଅପା, ଚିଉଭାଇ ଆପଣଙ୍କ ଉପରେ ରାଗୁଛନ୍ତି କାହିଁକି ?"

"କିଏ କହିଲା, ରାଗୁଛନ୍ତି ବୋଲି ?" ମୁଁ କହିଲି ।

"ରାଗୁ ନାହାନ୍ତି ଆଉ କ'ଣ ? ସକାଳେ ଏତେ ଲୋକଙ୍କ ଆଗରେ କେମିତି ରାଗିଲେ ଆପଣଙ୍କ ଉପରେ ?" ଆଉ ଜଣେ ପିଲା କହିଲା ସମର୍ଥନ କରି ।

ସକାଳର କଥା ମୋ ମନରେ ଆଦୌ ନଥିଲା । ହସି ଦେଇ କହିଲି - "ଚିଉଭାଇ ସେମିତି, ଯାହାକୁ ସେ ଭଲ ପାଆନ୍ତି– ତାକୁ ବେଶୀ ଗାଳି ଦିଅନ୍ତି ।"

"ଯାହାକୁ ଗାଳି ଦିଅନ୍ତି ନାହିଁ- ତାକୁ କ'ଣ ଭଲ ପାଆନ୍ତି ନାହିଁ ? ଆମକୁ ତ ମୋଟେ ଗାଳି ଦଉ ନାହାନ୍ତି, କେଡ଼େ ସୁନ୍ଦର ସାଙ୍ଗ ଭଳି କଥା ହେଉଛନ୍ତି ।"

"ପିଲାମାନଙ୍କୁ ସେ ପ୍ରାୟ ଗାଳି ଦିଅନ୍ତି ନାହିଁ- ବହୁତ୍ ଭଲ ପାଆନ୍ତି ।" ମୁଁ କହିଥିଲି ।

ତା' ପରଦିନ 'ଶ୍ରମଦାନ' ବେଳେ ଆମେ ସମସ୍ତେ କିଆରିରୁ ଘାସ

ଉପାଡୁଥିଲୁ । ବର୍ଷାଋତୁ ପରବର୍ତ୍ତୀ ସମୟ- ତେଣୁ ଚାରିଆଡ଼େ ଅନାବନା ଗଛ ଓ ପ୍ରଚୁର ଘାସ ମାଡ଼ି ଯାଇଥାଏ । ପ୍ରବଳ ଉତ୍ସାହରେ ଶିବିରାର୍ଥୀ ପିଲାମାନେ ଘାସ ଉପାଡୁ ଥାଆନ୍ତି । ଅବଶ୍ୟ ତଫାତ୍ ଜାଣି ନ ପାରି ହଳଦୀ କିଆରୀର ହଳଦୀ ଗଛମାନଙ୍କୁ ମଧ୍ୟ ଘାସ ସହିତ ସଫା କରିଦେଉଥାଆନ୍ତି । ଚିତ୍ତଭାଇଙ୍କ ଦଳ ଗୋଟିଏ ପଟେ ଥାଆନ୍ତି– ଆମ ପଟରେ ଝିଅମାନେ ଥାଆନ୍ତି । ଘାସ ଉପାଡ଼ିବା ଭିତରେ ପାଖାପାଖି ହୋଇ ଆସିବାରୁ ସୁଯୋଗ ପାଇ ମୁଁ ଚିତ୍ତଭାଇଙ୍କୁ ପଚାରିଲି– ‘‘ଚିତ୍ତଭାଇ, ଆମର ଶିକ୍ଷା ବ୍ୟବସ୍ଥା ଛାତ୍ରକୈନ୍ଦ୍ରିକ ହେଉ ବୋଲି ଆପଣ ସବୁବେଳେ କହନ୍ତି ତ ।’’

‘‘ନିଶ୍ଚୟ ।’’

‘‘ପିଲାମାନଙ୍କର ଇଚ୍ଛା ଖୁସି, ଆନନ୍ଦକୁ ପ୍ରାଧାନ୍ୟ ଦେବା ଦରକାର ନା ନାହିଁ ?’’

‘‘ଅଲବତ୍ ଦରକାର ।’’

‘‘ତା’ ହେଲେ ? ମୋ ଉପରେ ଏତେ ଜୋର୍‌ରେ ରାଗିଲେ କାହିଁକି ? ମୋ ଛାତ୍ରୀର ଇଚ୍ଛା ଓ ଖୁସିକୁ ପ୍ରାଧାନ୍ୟ ଦେଇ ତାକୁ ତା’ର ପୁରୁଣା ସ୍କୁଲକୁ ନେଇଥିଲି । ପିଲାମାନଙ୍କର ଖୁସିପାଇଁ, ଆନନ୍ଦ ପାଇଁ ବାଟରେ ବାରମ୍ବାର ଗାଡ଼ି ରଖିବାକୁ କହିଥିଲି । ପାହାଡ଼, ଜଙ୍ଗଲ, ଝରଣା, ଦେଖିବାକୁ, ଛୁଇଁବାକୁ ପିଲାମାନେ ବ୍ୟାକୁଳ ହେଉଥିବେ- ତାଙ୍କୁ ସେ ସୁଯୋଗ ନ ଦେଇ ଜବରଦସ୍ତ ନେଇ ଆସିଥାଆନ୍ତୁ ଆମେ ? ସେମାନଙ୍କ ମନ କଷ୍ଟ ହୋଇ ନ ଥାନ୍ତା ?’’

‘‘ଠିକ୍ କରିଛ । ସେମାନଙ୍କ ଖୁସି ପାଇଁ- ଆନନ୍ଦ ପାଇଁ ତ ସବୁ ଆୟୋଜନ ।’’ ଚିତ୍ତଭାଇ କହିଥିଲେ ।

‘‘ତା’ ହେଲେ ମୋ ଉପରେ ଆପଣ ରାଗିଲେ କାହିଁକି ? କେତେ ଲୋକଙ୍କ ଆଗରେ ମୋତେ ଆପଣ ଗାଳିଦେଲେ କହିଲେ ?’’

‘‘ଏକଥା ସେତେବେଳେ କହିଲ ନାହିଁ ?’’

ଆରେ ବାପ୍‌ରେ ବାପ- ସେତେବେଳେ ତାଙ୍କର ଯେଉଁ ଦୁର୍ବାସାରୂପ ! କିଏ କହିବାକୁ ସାହସ କରିବ ?

ଏମିତିକା ଆମ ଚିତ୍ତଭାଇ । ବାହାରକୁ କେବେ କେବେ ପ୍ରଚଣ୍ଡ କ୍ରୋଧୀ ଭଳି ଜଣାପଡୁଥିଲେ ମଧ୍ୟ ଭିତରେ ଅତ୍ୟନ୍ତ ଉଦାର ସ୍ନେହଶୀଳ ମଣିଷଟିଏ । ସେଇ ସ୍ନେହୀମଣିଷଟିକୁ ଆନ୍ତରିକ ଭାବରେ ଚିହ୍ନିଛି ବୋଲି ତାଙ୍କୁ ସର୍ବଦା ଶ୍ରଦ୍ଧା ଓ ସମ୍ମାନ କରି ଆସିଛି । ବିଶେଷ କରି ‘କିଶୋର ଲେଖକ କର୍ମଶାଳା’ର ସେଇ

କେତୋଟି ଦିନରେ ତାଙ୍କ ବ୍ୟକ୍ତିତ୍ୱର ଯେଉଁ ଦିଗଟି ଆମ ଆଗରେ ଉଦ୍‌ଭାସିତ ହୋଇରହିଛି- ତାହା ତ ଭୁଲିବାର ନାହିଁ। ଯେଉଁ ସୁନ୍ଦର ଆନନ୍ଦମୟ ପୃଥିବୀର ପରିକଳ୍ପନା ଶ୍ରୀଅରବିନ୍ଦ କରିଛନ୍ତି- ଯେଉଁ ସୁନ୍ଦର ପୃଥିବୀର ସ୍ୱପ୍ନ ମୁଁ ସର୍ବଦା ଦେଖିଆସିଛି ସମସ୍ତ ପ୍ରତିକୂଳତା ସତ୍ତ୍ୱେ- ସେଇ ସୁନ୍ଦର ପୃଥିବୀର ବାର୍ତ୍ତାବହମାନଙ୍କୁ ପ୍ରସ୍ତୁତ କରିବାରେ, ଉତ୍ସାହିତ କରିବାରେ, ପ୍ରେରିତ କରିବାରେ ଚିତ୍ତଭାଇଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ।

*ପ୍ରବୀଣା ମହାନ୍ତି*
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର*
*ତପୋବନ, ଖଣ୍ଡଗିରି, ଭୁବନେଶ୍ୱର-୩୦*

## ଗଦ୍ୟଶିଳ୍ପୀ - ଚିତ୍ତରଞ୍ଜନ

ପୂଜ୍ୟ ଚିତ୍ତରଞ୍ଜନ ଦାସ ଯଥାର୍ଥରେ ଯୁଗସ୍ରଷ୍ଟା ଓ ଶୁଭ୍ର ପଦ୍ମାସନା ବାଣୀଙ୍କର ଯୋଗ୍ୟ ବରପୁତ୍ର। ସମଗ୍ର ଓଡ଼ିଆ ସାହିତ୍ୟରେ ତାଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି। ସାହିତ୍ୟର ବିଭିନ୍ନ ବିଭାବରେ ଲେଖନୀ ଚାଳନା କରି ସେ ଓଡ଼ିଆ ସାହିତ୍ୟକୁ, ଓଡ଼ିଆ ଜାତିକୁ ବହୁ ଭାବରେ ଋଦ୍ଧିମନ୍ତ କରିଛନ୍ତି। ମାନବ ଚରିତ୍ରର ସୂକ୍ଷ୍ମ ଅଧ୍ୟୟନ ଓ ଜୀବନର ବିଭିନ୍ନ ବିଭାବକୁ ଭିନ୍ନ ଭିନ୍ନ ରୂପେ ସ୍ପଷ୍ଟତର କରି ନିଜେ ଦେଖିବାରେ ଓ ଅନ୍ୟକୁ ଦେଖାଇବା ଦିଗରେ ସେ ଜଣେ ଅପ୍ରତିଦ୍ୱନ୍ଦୀ ବାଣୀଦୂତ। ତାଙ୍କ ସମଗ୍ର ଜୀବନ ଓ ସାଧନା ସତେ ଯେପରି ଧର୍ମ ଓ ଧରଣୀ, ପ୍ରଦୀପ ଓ ଶିଖା, ସାଗର ଓ ଉର୍ମି, ଚନ୍ଦ୍ର ଓ ଚନ୍ଦ୍ରିକା, ବୀଣା ଓ ମୂର୍ଚ୍ଛନା, ବାକ୍ ଓ ଅର୍ଥ, ଗୀତି ଓ ଛନ୍ଦ, ଗାନ ଓ ତାନ, ପୁଷ୍ପ ଓ ସୌରଭ ଭଳି ଏପରି ଓତଃପ୍ରୋତ ଜଡ଼ିତ, ସଂଶ୍ଳିଷ୍ଟ। ତାଙ୍କ ପ୍ରବନ୍ଧ ସୃଷ୍ଟି ଓଡ଼ିଆ ସାହିତ୍ୟରେ ସଂପୂର୍ଣ୍ଣ ଏକ ନୂତନ ଶୈଳୀର ପ୍ରବର୍ତ୍ତକ। ସାହିତ୍ୟ, ସଙ୍ଗୀତ, କଳା, ଜନ୍ମଭୂମି, ପ୍ରକୃତି ଓ ମଣିଷ- ଏହିସବୁ ପ୍ରାବନ୍ଧିକ ଚିତ୍ତରଞ୍ଜନଙ୍କର ବିଶେଷ ପ୍ରିୟ ଓଡ଼ିଶା, ଭାରତବର୍ଷ ଏବଂ ବିଦେଶକୁ ବାରମ୍ବାର ଭ୍ରମଣ କରି ସେ ଦେଶ ଓ ଜାତି ସଂପର୍କରେ ଘନିଷ୍ଠ ଭାବେ ଜାଣି ପାରିଛନ୍ତି। ଓଡ଼ିଶାର ନରନାରୀ, ନଦନଦୀ, ପାହାଡ଼ପର୍ବତ, ବନଉପବନ, ସାଗରସରିତକୁ ଯେଭଳି ପ୍ରତ୍ୟକ୍ଷ ଦେଖିଛନ୍ତି, ଜାଣିଛନ୍ତି ତାଙ୍କ ସମୟରେ ସେପରି

ଅନ୍ୟ କେହି ତାହା କରିପାରି ନାହାନ୍ତି । ଚିତ୍ତରଞ୍ଜନ ସତତ ଜଣେ ସଂବେଦନଶୀଳ ମଣିଷ ଓ ଏହି ସଂବେଦନଶୀଳତା ହିଁ ତାଙ୍କ ସ୍ରଷ୍ଟା ମାନସର ପ୍ରଧାନ ଉପଭୂମି ।

ସେ ଓଡ଼ିଶାର ଜଣେ ବରେଣ୍ୟ ପ୍ରାବନ୍ଧିକ । ବ୍ୟକ୍ତି ହିସାବରେ ତାଙ୍କର ଭଦ୍ରତା, ଶାଳୀନ୍ୟ ଓ ଅମାୟିକ ବ୍ୟବହାର ସମ୍ପୂର୍ଣ୍ଣ ଅଭିମାନ ଶୂନ୍ୟ । ମୋ' ଦୃଷ୍ଟିରେ ସେହି ବରେଣ୍ୟ ସ୍ରଷ୍ଟା ଜଣକ ହେଉଛନ୍ତି ଯଥାର୍ଥରେ ଏକ ସଫଳ ଗଦ୍ୟଶିଳ୍ପୀ, ଏକ ସହଜାତ ସାହିତ୍ୟିକ, ଏକ ଅକୁତୋଭୟ ନିରଭିମାନ ମଣିଷ । ସେ ମାନବତା, ପ୍ରତିଭା ଓ ସାଧନାର ପୂଜାରୀ ଓ ମୁଗ୍‌ଧ ପ୍ରଶଂସକ, ସତ୍ୟ ଓ ସୌନ୍ଦର୍ଯ୍ୟର ଭବ୍ୟ ଉପାସକ, ମୁକ୍ତ ପ୍ରାଣ, ସଂଯତ ବାଗ୍ମୀ, ଜଣେ ଅମାୟିକ ମିଷ୍ଟଭାଷୀ ଓ ଗମ୍ଭୀର ଚିନ୍ତାଶୀଳ ବ୍ୟକ୍ତି । ପୁଣି ମାନବର ଜୀବନକୁ ଓ ଜଗତକୁ ପୂର୍ଣ୍ଣରୂପରେ ଅଧ୍ୟୟନ କରିଥିବା, ଭଲ ଭାବରେ ଜାଣିଥିବା ସେହି ସ୍ରଷ୍ଟା ଓ ମହତ୍ ମଣିଷ ଜଣକ ହେଉଛନ୍ତି ପ୍ରାବନ୍ଧିକ ପୂଜ୍ୟ ଚିତ୍ତରଂଜନ ଦାସ । ଏକ ପ୍ରଚଣ୍ଡ ଓ ବହୁମୁଖୀ ପ୍ରତିଭାର ଅଧିକାରୀ ସିଏ । ବହୁ ଭାଷାରେ ପାରଦର୍ଶୀ ଏଇ ବିଦ୍ୱାନ୍, ମନସ୍ତତ୍ତ୍ୱବିତ୍ ଓ ସମାଜ ବିଜ୍ଞାନୀଙ୍କ ଗୌରବର ସୌରଭ ଆଜି ଉତ୍କଳର ସୀମା ଟପି ଦେଶ ବିଦେଶରେ ପରିବ୍ୟାପ୍ତ । ତାଙ୍କର "ଜୀବନ - ବିଦ୍ୟାଳୟ" ଗ୍ରନ୍ଥଟି ଓଡ଼ିଆ ସାହିତ୍ୟରେ ଏକ ମୂଲ୍ୟବାନ ସଂପଦ ହୋଇରହିବ । ସେ କିନ୍ତୁ ଚିରକାଳ ଶାଶ୍ୱତ କୀର୍ତ୍ତିର ଅଧିକାରୀ ହୋଇ ରହିବେ ତାଙ୍କର "ବିଶ୍ୱକୁ ଗବାକ୍ଷ", "ତରଙ୍ଗ ତଡ଼ିତ" ଓ "ରୋହିତର ଡାଏରୀ" ଗ୍ରନ୍ଥତ୍ରୟ ଲାଗି ।

ପ୍ରାବନ୍ଧିକ ଚିତ୍ତରଞ୍ଜନଙ୍କ ସାହିତ୍ୟ- କୀର୍ତ୍ତି ଯଥାର୍ଥରେ ଅକ୍ଷୟ ଓ ଅମର । ଆଜୀବନ ସାଧକ ରୂପେ ଓଡ଼ିଆ ସାହିତ୍ୟକୁ ସେ ଯେଉଁ ମହାର୍ଘ୍ୟ ଗଦ୍ୟରଚନା ଦାନ କରିଛନ୍ତି ତା'ର ପ୍ରତିଦାନ କାହିଁ ? ଏଠାରେ ମନେ ପଡ଼େ ଇଂରେଜ କବି W.B. Yeatsଙ୍କ ଏକ ସୁନ୍ଦର ଉକ୍ତି "Why should we honour those that die upon the field of battle ? A man may show as reckless a courage in entering into the abyss of himself." ଅର୍ଥାତ୍ ସମର ପ୍ରାଙ୍ଗଣରେ ସୈନିକର ସାଧନା ଓ ଆତ୍ମାହୂତି ଅପେକ୍ଷା ଶିଳ୍ପୀ, ସ୍ରଷ୍ଟା ଓ କବିର ଆତ୍ମ- ଆବିଷ୍କାର ସାଧନ- ଗୌରବ କିଛି ଊଣା ନୁହେଁ । ବରଂ ମହତ୍ତର ଓ ମହାମହିମାରେ ମହିମାନ୍ୱିତ ।

ଏହି ସାହିତ୍ୟ ମନୀଷିଙ୍କ ଦାନ ଆଜି ଉତ୍କଳ ମର୍ମେ ମର୍ମେ ଅନୁଭବ କରୁଛି । ଚିତ୍ତରଂଜନ ଜଣେ ସଂଯତ, ସ୍ଥିତପ୍ରଜ୍ଞ ଓ ସଚେତନ ଗଦ୍ୟ ଶିଳ୍ପୀ । ତାଙ୍କ ପ୍ରବନ୍ଧର ଭାଷା-ମାଧୁରୀ, ପଦ-ଲାଳିତ୍ୟ, ଶବ୍ଦ ପ୍ରୟୋଗ ବର୍ତ୍ତମାନ ସୁଦ୍ଧା ଆମର

ଅନୁକରଣୀୟ, ଅନୁସରଣୀୟ ହୋଇ ରହିଛି। ଏ ଗଦ୍ୟସ୍ରଷ୍ଟାଙ୍କର ଗଦ୍ୟ କୀର୍ତ୍ତିରାଜି ଆମକୁ ସର୍ବଦା ଆନନ୍ଦ ଓ ସୁଶିକ୍ଷା ପରିବେଷଣ କରି ଜୀବନ ଓ ଜଗତକୁ ରସାପ୍ଲୁତ କରୁଛି। ତାଙ୍କର ଅମୃତମୟୀ ଲେଖନୀଦ୍ୱାରା ଯେ, ଉତ୍କଳର ଅଶେଷ ଉପକାର ସାଧିତ ହେଉଛି। ସେ ସବୁକୁ ଆମେ ଆଜି ମୁକ୍ତପ୍ରାଣରେ, କୃତଜ୍ଞ ପ୍ରାଣରେ ସ୍ମରଣ କରୁଛୁଁ, ତାଙ୍କର ଅବଦାନକୁ ସାଦରେ ଗ୍ରହଣ କରୁଛୁଁ।

ଏହି ବାଣୀପୁତ୍ର, ଏହି ଗଦ୍ୟ-କବି, ଏହି ଅକୁତୋଭୟ ମଣିଷ ଆମର ଚିର ନମସ୍ୟ !

*ଶ୍ରୀ ଦୀପ୍ତି ରଞ୍ଜନ ଶେଠ*

*ଝାରମୁଣ୍ଡା,*

*ପୋଷ୍ଟ: କଳାମାଟି, ଜି: ସମ୍ବଲପୁର-୭୬୮୦୨୫*

ଚିର ଜିଜ୍ଞାସୁ ମନ ଓ ସଦା ତରୁଣ ହୃଦୟ ନେଇ ଜୀବନରେ ଅଦ୍ୟାବଧି ଅକ୍ଲାନ୍ତ ଭାବେ ସେ ଅନେକ ପଥ ଅତିକ୍ରମ କରି ଆସିଛନ୍ତି । ତଥାପି ତାଙ୍କ ଯାତ୍ରାର ବା ଅନ୍ବେଷାର କେଉଁଠି ଅନ୍ତନାହିଁ । ତାଙ୍କ ଦୃଷ୍ଟି ସମକ୍ଷରେ ସତତ ଉଦ୍ଭାସିତ ହେବାରେ ଲାଗିଛି ସୋପାନ ପରେ ସୋପାନ, ଶୃଙ୍ଗପରେ ଶୃଙ୍ଗ । ଅପହଞ୍ଚ ଆହୁରି ଅନେକ ଉଚ୍ଚତାର ଆମନ୍ତ୍ରଣରେ ଉଦ୍‌ବୁଦ୍ଧ ତାଙ୍କର ଚେତନା ।....

ସେ ଜଣେ ନିରୋଳା ମାନବପ୍ରେମୀ ଓ ଏକାନ୍ତ ବନ୍ଧୁବତ୍ସଳ ଅମାୟିକ ସରଳ ମଣିଷ । ଅସଲ ବିଦ୍ୟା ବିନୟ ଆଣିଦିଏ, ଆତ୍ମମ୍ଭରିତା ଓ ଅଭିମାନର ନିର୍ମୋକ ଖସାଇ ଦିଏ । ତାଙ୍କ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି ସେମାନେ ଜାଣନ୍ତି ଯେ ବିନମ୍ରତାର ସେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ତାଙ୍କ ଭିତରେ ସବୁବେଳେ କଲ୍ଲୋଳିତ ହେଉଥାଏ ସଂପର୍କ ଯୋଡ଼ିବାର ବ୍ୟାକୁଳତା, ଆପଣେଇ ନେବାର ସହଜ ପଣ । ଅନାୟାସରେ ଆପେ ଆସି ସେ ଧରା ଦିଅନ୍ତି, ସକାଳର ସୂର୍ଯ୍ୟ ଯେମିତି ଧରା ଦିଏ ଘାସ ଓଠରେ ଶିହରି ଉଠୁଥିବା ଛୋଟ ଏକ ଶିଶିର ଟୋପା ଭିତରେ । ମିତ ବସିବାର ଅମିତ ସରାଗ ନେଇ ସେ ସଂସାର ସାରା ଘୂରି ବୁଲନ୍ତି । ଆତ୍ମୀୟତା ଢ଼ାଳି ଅନ୍ୟର ଭଲମନ୍ଦ ବୁଝନ୍ତି, ସୁଖଦୁଃଖରେ ସହଭାଗୀ ହୁଅନ୍ତି ।....

'ପରାର୍ଥ ପଥିକ' ପ୍ରଥମ ଖଣ୍ଡରୁ ଉଦ୍ଧୃତ

**ଯୋଗାଯୋଗ ଠିକଣା**

**ପଥିକ ପ୍ରକାଶନୀ**

ଡି.ଭି.ପି. କଲୋନୀ, ରସୁଲଗଡ଼, ଭୁବନେଶ୍ୱର - ୭୫୧୦୧୦, ଓଡ଼ିଶା

ସହଯୋଗ ରାଶି ତିରିଶି ଟଙ୍କା ISBN - 81- 88034 - 05 - 3